ମାଙ୍କୁ ନେଇ ପିଣ୍ଡା ଉପରେ ଗୋଟିଏ ଖଟିଆରେ ବସାଇ ଦେଇ ଦୁଆରକୁ ଆସିଲି । ମୋତେ ଦେଖି ହସି ହସି କହିଲେ—"କୁନ୍ଦା-ବାବୁ, ଆଜି କାହିଁକି ଆସିଲେ ? ଅନ୍ୟଦିନ ଆସିଥିଲେ ଭଲ ହୋଇଥାନ୍ତା ।"

—"ତୁମେ ଏଥ ବେଳ ଥିଲ ଦେ" !

—"ଅଚ୍ଛା କରନ୍ତୁ ନାହିଁ; ମୁଁ ଯାହାଁକି ଏଥ ଦିଅନ୍ତି, କହାକୁ ତ ମୁଁ କେବେ ଦେଇ ନାହିଁ । ଟିକି କଥା ।"

ଏତିକି ବେଳକୁ ପଟ୍ଟନାୟକଙ୍କର ବନ୍ଧୁବର୍ଗ ଅନେକମାନେ ଙ୍କ ବୋଲି ଦେଲେଣି । ପଟ୍ଟନାୟକ "ଚୋରିକରେ ! ଚୋରିକରେ !" —ସ୍ଲୋଗାନ କରି ମୋ ପାଖକୁ ଦୌଡ଼ି ଆସିଲେ । ସେହି ବେଳରେ ପ୍ରଥମେ ଅନ୍ତ ଇଙ୍ଗିତ ଠିକିଦେଲି । ଗଣ୍ଡା କହୁଥାଏ—"ହଁ ହଁ, କ୍ଷମା କରନ୍ତୁ । ମୁଁ ଖେଳେ ନାହିଁ ।" ଏଣେ ବେଳକୁ ଟାଙ୍କୀ ମା ଖିଲି ଖିଲି ହସୁଥାଏ ଓ ଖଟରୁ ଉଠିବାକୁ ଚେଷ୍ଟା କରୁଥାଏ । କହୁଥାଏ—"ପଡ଼ିଗଲି, ପଡ଼ିଗଲି ହୁଁ, ହୁଁ ମୁଁ ଯିବି" । ଏ କଥା ତିନି ଚାରିବାର ଉଚ୍ଚାରଣ କରି ପୁଣି ହସୁଥାଏ । ମୁଁ ମୋ ହାତ ବୋତଲରୁ କିଛି ଦେଇ ଦେହକୁ ଫିଙ୍ଗି ଦେଲି । ସେଠାରୁ ମୋ କପାଳରେ ଗୋଟିଏ ବୋତଲ ମାଡ଼ ବାଜିଲା । ବୋତଲ ଖଣ୍ଡି ଚୂନା । କାଚ ପଶି ମୋ କପାଳରୁ ରକ୍ତ ବହିବାକୁ ଲାଗିଲା । "କଣ ହେଲା ପଟ୍ଟନାୟକ ବାବୁ"— ସେଦା ଏତିକି କହୁଛି, ମୁଁ ତଳେ ପଡ଼ିଗଲି । ଆଖି ପିଟୁଳାକେ ପଟ୍ଟନାୟକ ସେଠୁ ଚମ୍ପଟ ଦେଲେଣି ।

ଆଖି ଫିଟାଇ ଦେଖେଁ ମୁଁ କୁଜାଙ୍ଗ ଡାକ୍ତର ଖାନାରେ । ମୋ ମୁଣ୍ଡରେ ପଟି, ପାଖରେ ମା, ବାପା ଓ ବଡ଼ଭାଇ । ଅନ୍ୟ

ଡାକ୍ତର ପଣ୍ଡା, ଗୋପାଳ, ଗଣେଶ ଓ ଶଚ୍ଚିଦାନନ୍ଦ । ସମସ୍ତେ ମୋ ଆଡକୁ ଦୁଃଖିତ ହୋଇ ଅନାଇଛନ୍ତି । ମୋର ସମ୍ପୂର୍ଣ୍ଣ ସଜ୍ଞା ଆସିନି ତେବେବି ବୁଝିପାରୁଛି ଅନାଇ ବୁଝି ପାରେ — ଘଟଣାଟି ତମନ୍ତ ଉତ୍ସବର ଆନୁଷଙ୍ଗିକ ବିନାଶର ଫଳ । ମା କାନ୍ଦୁଥାନ୍ତି— "ଜନ୍ମି, ଜନ୍ମ, ତୁ କାହିଁକି ଡଙ୍ଗ ଚଢିଗଲୁ ? ଆମର ବଂଶ ଉତ୍ସବ ଆବଶ୍ୟକ ନାହିଁ । ଅଛି ଯେଉଁମାନଙ୍କର ସେମାନେ ଗୋଟିଏ ଡଙ୍ଗାରେ ମିଳିମିଶି ନଦୀକୂଳ କୂଳପାଣି ଖେଳନ୍ତୁ । ଆମର ପରିବାର ସମ୍ପଦ ଓ ସୁନାମ । ଯେଉଁମାନେ ଏ ଦେଶ କଳ୍ପନାରେ ସେମାନଙ୍କ ମନ୍ତ୍ରରେ ସାମାନ୍ୟ ଫରକ । ଢଙ୍ଗ । ଶ୍ରୀ ଧରି ଏତେବାଟ କାହିଁକି ଗଲୁ ??"

ବଡ଼ ହୋଇ କହୁଥାନ୍ତି — "ଏ ଯୁଗରେ ଧର୍ମ କଥା କେହି ବୁଝିବେ ନାହିଁ । ତୁମ୍ଭ, କଣ ପାଇଁ ରଙ୍ଗ ଚେଙ୍ଗିଗଲ ? ଘରେ ଲୋକ ଥିଲେ କଣ ହୋଇ ନ ଥାନ୍ତା । ପାପ ଛୁଟୁଛି । ହୋଲି ଦେବତା ଗବେଷଣା କେତେବାଟ ଗଲାଣି ଆଉ ଜାଣେ ନାହିଁ । ଅଜ ଗୃହଅଲେ ହୋଲି ମାଡ଼େ ଯେଉଁ ଦଙ୍ଗା ଉତ୍ସବ .......... ତୁମେ କୁଆଡ଼େ ମାନବ ... ସ୍କୁଲ ପିଲା, କଲେଜ ପିଲା । ଆମେ ତାଙ୍କୁ ବୁଝାଇ ପାରିବୁ ନାହିଁ । ନିଜେ ନିଜେ ବୁଝ ..... ଏଡିକରେ ହେଲେ ଏ ଶିଖନ୍ତା !"

ମା କାନ୍ଦି କାନ୍ଦି କହୁଥାନ୍ତି —"କେମିତି ଲାଗୁଛି ବାପ ?"

ମାଙ୍କ ପାଖରେ ବାପା ଚୁପ୍ କରି ବସିଥାନ୍ତି । ଗଣେଶ ଓ ଶଚ୍ଚିଦାନନ୍ଦ ପଚାରିଲେ — "କହୁନୁ କେମିତି ଲାଗୁଛି ?"

ଡାକ୍ତର ବାବୁ କେତଲୀ ଧାଇଁ ସଙ୍ଗରେ ଆସି କହିଲେ—

"ବେଶୀ ସହିତ କେହି କଥାବାର୍ତ୍ତା କରନ୍ତୁ ନାହିଁ । ସମ୍ପୂର୍ଣ୍ଣ ବିଶ୍ରାମ ନିଅନ୍ତୁ । ଭଲ ହୋଇ ଯିବ ।"

ଧାତ୍ରୀ କହିଲେ—"ଅପରେଶନ ସମୟେ ଯାନ୍ତୁ । ସେ ବିଶ୍ରାମ ନିଅନ୍ତୁ ।"

ପଦ୍ମା ମୋ ଆଡ଼କୁ ଚାହୁଁଥାଏ । ଅଜସ୍ର ଅଶ୍ରୁ ବର୍ଷଣ କରି କରି ହୋଇ କାନ୍ଦୁଥାଏ । କ୍ଷଣ ମାତ୍ର ମୋ ଶଯ୍ୟା ପାଖକୁ ଆସି ଧାତ୍ରୀଙ୍କୁ ପଚାରିଲା—"ଭଲ ହୋଇ ଯିବେ ତ ?"—"କଣ ହୋଇଛନ୍ତି କି ? ଗୋଟିଏ ସାମାନ୍ୟ ଆଘାତ ! ପାଞ୍ଚ ସାତ ଦିନ ଭିତରେ ଭଲ ହୋଇ ଯିବେ । ତୁମେ କାହିଁକି ଏପରି କାନ୍ଦୁଛ ? ତୁମର ଦୋଷ କଣ ?"

ପଦ୍ମା ଶଙ୍କିତ ଚିତ୍ତରେ ମୋ ଶଯ୍ୟା ନିକଟରେ ବସି ମୋ କପାଳର ବେଣ୍ଡେଜକୁ ଚାହିଁ ରହିଲା । ରକ୍ତସ୍ରାବ ବନ୍ଦ ହୋଇ ଯାଇଥାଏ । ମୋତେ ସାମାନ୍ୟ ଆରାମ ଲାଗୁଥାଏ । ବାପା ମାଙ୍କୁ କହିଲେ—"ପୁଅ ଭଲ ହୋଇ ଯିବ, ଧୈର୍ଯ୍ୟଧର" । ମା ଆହୁରି କାନ୍ଦିଲେ । ସେତେବେଳ ପର୍ଯ୍ୟନ୍ତ ମୁଁ କଥା କହି ପାରି ନ ଥିଲି । ବର୍ତ୍ତମାନ ଖୁବ୍ ଧୀରେ ଧୀରେ କହିଲି— "ମା !" ମା ମୋ ଆଡ଼କୁ ଦେଖିଲେ । ତାଙ୍କ ଅଶ୍ରୁଭରା ଆଖିକୁ ଦେଖି ମୁଁ କହିଲି "ଅଳ୍ପ ଭଲ ଲାଗିଲାଣି । ମୁଣ୍ଡ ବିନ୍ଧୁଛି ।" ମାଙ୍କ ସେହି ସମୟର ଦୃଷ୍ଟି ଏବେ ପର୍ଯ୍ୟନ୍ତ ଛଟକା ହୋଇ ମୋ ହୃଦୟରେ ରହିଛି । ମୁଁ ପଦ୍ମାକୁ ଥରେ ଓ ମାଙ୍କ ଆଡ଼କୁ ଥରେ ଚାହିଁଲି । ଆଖି ବନ୍ଦକରି ଶୋଇବା ଉପକ୍ରମ କଲି ।

ଏହିତ ଦେଖୁଛୁ କପାଳକୁ; ଏକଥା ସବୁ ଆଜିପରି ଲାଗୁଛି ।

ନଈବର ଘର୍ଘ ନିଶ୍ବାସହିଁ ଏ ପଚାରିଲା । ସନ୍ଧ୍ୟା ହୋଇ ଯାଇ ଥିଲେଣି । ଆକାଶରେ ମଧ୍ୟ ଧ୍ରୁବ ଶୁକ୍ରଟା ତାରା ଦେଖା ଦେଇ ଥିଲେଣି । ଧୀରେ ଧୀରେ ମୁଁ ଓ ହରିହର ଲମ୍ବଗଛ ମୂଳରୁ ଫେରିଲୁଁ ।



## —ଗୁଡ଼ାବାଛି—

### (୧) ଛକରାସ୍ତା ଓ ଭୁଲୁଆ ଜାଲିଆ ଗହଳ

ନଗର ଓ ପ୍ରସିଦ୍ଧର ଯୋଗେଯୋଗେ ନଥାବାର୍ଣ୍ଣ ଦ୍ୱୀପନ୍ତ ତାଙ୍କ ପଥା ଚଳିବାକୁ ଆଦେଶ ଦେଇ ନ ଚିହ୍ନର ଦୁଷ୍ଟଜାରୀ ଛତ । ସେମାନେ ଅଙ୍ଗୁଠି ଦେଖାଇ ନିର୍ଦ୍ଦେଶ କରନ୍ତି ରାସ୍ତାକୁ, ଯେଉଁ ରାସ୍ତା ଦେଖା ଉପରେ ସେମାନେ ଗୋଟିଏ ଗୋଟିଏ ଚନ୍ଦ୍ର ହୋଇ ଜଗୁଆଳ ରୂପ ବସିଛନ୍ତି ।

ପିଚୁରାସ୍ତା ଲମ୍ବିଛି, ବହୁତବାଟ — ଅସରନ୍ତି । ଲୋକେ ଚାଲି-ଛନ୍ତି । ଚାଲିବା ଧାରା କାହାକୁ ମନା ନାହିଁ, ଯା ବାଟରେ ସେ । ଜୀବନ ପଥରେ ବାଟବଣା ହୋଇଥିଲେ ବି ସେମାନେ ତୋଠାଏ ବାଟ । ଜୀବନ ସାରା ଝାଳ ଚୋପା ଅନାଟନ ଦେଇ ଚଳିଥିବାଲ ହେଉଥିଲେ ମଧ୍ୟ ହେନ୍ତ ଗୋଟାଏ ପିଚୁରାସ୍ତା ସହରକୁ ଲମ୍ବିଛି । କାହାର କାହାର ବାଟ ଚଞ୍ଚଳ ସରିଯାଏ ଅଜାଡ଼ୁଆ ପରିସ୍ଥିତ ଆସିଲେ । କାହାର କଷ୍ଟରେ ସରେ, ଆଉ କେତେ ଲୋକ କେତେ ସରିବ ବୋଲି ଆକାଶର ଆଲୋକ ଖଣ୍ଡକୁ ଦାବସାଗ ଚାହିଁଥାନ୍ତି । ରାସ୍ତାରେ ଚାଲିବାଟା କେବେଁ ବନ୍ଦ ନାହିଁ । ଚାଲିବା ଲୋକେ ନିଜ ନିଜ ଜୀବନର

ପିକ୍ନିକ, ହଙ୍କଂ, ସ୍ୱର୍ଗ, ନର୍କ, ଜଙ୍ଗଲ, ସାଗର ଅପାରଗ ବାଟ ନଥା ଏଣ୍ଟି ଓ ପୁନ ଖୋଲାଥାନ୍ତି । ଏ ଖୋଲିଲେ ବାଟ ମଧ୍ୟ ସରେ ନାହିଁ । ଏ ସ୍ୱପ୍ନ ନିଶ୍ଚୟ ହେବ କେମିତି ? — ବୁଝ ନାହିଁ । ମନଟା କଣ ଖାଲି ନେଇ ଯାଉଛ କି ? ଛାଣି ଭିତରେ ମାଛ ଖେଳେ । ମନ ଭିତରେ ସ୍ୱପ୍ନ ଇନ୍ଦ୍ରିୟଙ୍କ ଚାଲିଛି ହୁଏ । ସ୍ୱପ୍ନ ଆଉ ଖୋଲିବାକୁ ହିଁ ଦେବ । ଏ ବାଟରେ ବୁଝା ଆମିଙ୍କ ଜନ୍ମବାଟା ଭୁଲ ହୋଇଯିବ, ହେଲେ ବେଳେ ଟାଏ ଭ୍ରାନ୍ତିର ସ୍ପୃହା ମନକୁ ଟାଣି ନେଉଥାଏ ।

ବମ୍ବାଇ ଷ୍ଟାଟେ ଷ୍ଟାଟେ ଛକ ପଡ଼େ × × × × × କେତେ ଛକ ଅଛନ୍ତି ଜଣାପଡୁଏ ନାହିଁ । ଛକ ଦେଖିଁ ନ ପାରିଲେ ଲୋକର ଲାଗେ ଗାଡ଼ିରେ । ଲୋକର ଟିକଏ ଜଣା ହେଲେ ରାସ୍ତା ଭୁଲିବାଟା ଧୂଳିର ହୁଏ ନାହିଁ । କିନ୍ତୁ ଟା ଶିକ୍ଷା ମିଳେ । ପୂର୍ବଚିନ୍ତା ସମ୍ବନ୍ଧ ଲୋକରଙ୍କ ଚିନ୍ତା ମିଳେଇ ଯାଏ ଏକ ଦୃଷ୍ଟାନ୍ତ ଚଳମାନ ଅବସ୍ଥା ଆସେ । ଜୀବନର ମଧ୍ୟ ସାଧନା ହୁଏ । ଏହି ପରିବେଶ ଚରିତ୍ର ଗଠନ କରିଥାଏ । ଦୃଷ୍ଟାନ୍ତ ଓ ପରିବେଶଙ୍କର ପ୍ରତିକ୍ରିୟାରେ ମନରେ ଯେଉଁ ଅଭ୍ୟାସ ଓ ପ୍ରବୃତ୍ତି ଜନ୍ମେ ତାହା ହୁଏ ପଥିକର ଚରିତ୍ର ଓ ଜୀବନର ପଥ ।

ଦେଖନ୍ତି ଆଗକୁ ଗୋଟିଏ ଛକ ଦେଖା ଗଲଣି । ଛକର ଦକ୍ଷିଣ ଦିଗକୁ ସେଲ୍ଟର କ୍ରସ୍ ମର୍କୁରୀ ଜଗିବସିଛି ତମ୍ବୁଟିଏ ପକାଇ । ତମର ଯାତ୍ରା ଟିକେଟ୍ ଦେଖାଇ ଥିବ ସେଇଠି ନିଶ୍ଚୟ ଦେବ । ଟିକେଟ୍ ନ ଦେଇ ବାଟ ନାହିଁ । ଯାତ୍ରୀମାନେ ଟ୍ରକ୍, ବସ୍, ଟ୍ୟାକ୍ସି, ମାଲଗାଡ଼ି, ଜଳଯାନ ସବୁ ଏ ବାଟ ଦେଇ ଗଲେ ଜମା ରହନ୍ତି ନାହିଁ । ଜନଗଣ ନେଉଥିଲେ ଟିକେଟ୍ ପଡ଼େ । ଯାତ୍ରୀମାନେ କହନ୍ତି— 'ଟ୍ରକ୍ ନେବା ଓ ଟିକେଟ୍ ଦେବା ପୂର୍ବପୁରୁଷ ଦେଶ ଓ ଜାତିର

କାମ"। ଦିବାକର୍ଶି ଜଣେ ରେଳବି ହେଲେ ଏଥି ପାଇଁ ସଜାଗ ରହିଥାନ୍ତି। କେବଳ ଘରୁଆମାନଙ୍କୁ ଗୁଡ୍ ଅଛି। ଗାଁଉଲି ଘରୁଆ ହେଲେ ଏ କଥା ସହଜରେ ଜାଣି ପାରେ ନାହିଁ।

ଘରୁଆଟିଏ ଘରଧରି ଆଗେଇ ଚାଲିଛି। ଘର ତା'ର ନୂଆ। ସେମିତି ଟିକଟ୍ ଲଗିଲା ଭଳି କୌଣସି ଜିନିଷ ଘରରେ ଅଛି ବୋଲି ସେ ଜାଣେ ନାହିଁ। ଗାଉଁଲିଲୋକ, ତା'ର ଆଶଙ୍କା କାଳେ ଜଙ୍କ ଜାଗାରେ ବାବୁମାନେ କହିବେ - "ଏ, ଘରୁଆ, ରହ। ଏଠିକି ଆ। କଣ ରଖିଛୁ ଦେଖା।" ଅଟକେଇ ଦେଲେ ଅଡୁଆରେ ପଡ଼ିବ। ଉତ୍ତର ଦେବାକୁ ପାଟି ଖୋଲ ପାରିବ ନି। ମାଲିକ୍ ପାଖରେ ନ ଥିଲେ କ'ଣ ବୋଲିବେ କଣଟାଏ ପାଟିରୁ ବାହାରି ପଡ଼ିବ। ମାଲିକ ହେଉଛନ୍ତି ବୁଢ଼ାବାବୁ।

## (୨) ପରିଚୟ

ଅନେକ ଦିନ ହେଲା ବୁଢ଼ାବାବୁ ଆସିଥିଲେ ତାଙ୍କ ଧର୍ମପତ୍ନୀ ଘରକୁ। ଆଜି ସ୍ଥିର କରିଛନ୍ତି ଗାଁକୁ ଯିବାକୁ। ବସ୍‌ରେ ଚଢ଼ି ବାହାରି ଯିବେ। ଥରେ ଧରମପତ୍ନୀ ନଜଗାଁ ବସୁମଣିପୁରରୁ ବନମାଳୀପୁରକୁ ବଳଦଗାଡ଼ି ଯୋଗେ ଯାଉଥିଲେ। ବାଟରେ ଦୁର୍ଘଟଣା, ବଳଦଗାଡ଼ି ଓଲଟି ପଡ଼ିବାରୁ ବୁଢ଼ାବାବୁଙ୍କ ଗାଁ କୁଟୁମ୍ବ-ଖମାରରେ ଆଶ୍ରୟ ନେଇଥିଲେ। ବୁଢ଼ାବାବୁ ଏହି ଘଟଣାରେ ଯଥେଷ୍ଟ ସାହାଯ୍ୟ ଓ ସହାନୁଭୂତି ଦେଖାଇ ଥିଲେ। ସେହି ଦିନୁ ଏ ସମ୍ପର୍କ। ଭଗବାନ୍ ତାଙ୍କପ୍ରତି ଦୟାକରି ଏତେକ ସୁବିଧା କରିଦେଇ ଅଛନ୍ତି। ବର୍ତ୍ତମାନ ସେ ଧରମବାପ। ଏ ଘରଟି ତାଙ୍କ ବୋଝ। ବୋଝ ଭିତରେ ସାମାନ୍ ଅଛି ଗୋଟିଏ କାଠବାକ୍ସ, ବିଛଣା ଶେଯ,

ନୂଆ ଚୁଙ୍ଗୁଣିଙ୍କ ଗୋଠା, ଜଙ୍ଘଡ଼ା ଦାନ୍ତିଏ ଓ ବସ୍ତାଟିଏ। ବସ୍ତା ଘାଡ଼ରେ ଥୋଇଛନ୍ତି କାନ୍ଥ ଛଟକା ଗଜଗଣ୍ଡିକା ଓ ଗୋଟିଏ ଶ୍ଲେଟ ଖୋଟକା, ସେଁ ବୁଝ ଦେଖାଁ ଯାଉ। ଗୋଠକାଠି ବନ୍ଧୁ କୌଶଳରେ ଧାରେଇଛନ୍ତି ଓ ଉଖିଛନ୍ତି ତୁମ୍ବରେ ବସ୍ତା ଭିତରେ, କେନ୍ଦ୍ର ପେଟିଟ ଜାଣି ପାରିବେ ନାହିଁ; ତାହାର ଆଗି ମଧ୍ୟ ଚେଠିକ ଜିପିଭାନ୍ତି। ଭାବିଲେ ଅତି ସାଧାରଣ ବସ୍ତା ବୋଲି ଅନୁମାନ ହେବ।

ବୁଢାବାବୁଙ୍କୁ ଦେଖିଲେ ଆପଣମାନେ ନିଶ୍ଚୟ ଚିହ୍ନି ପାରିବେ। କାହିଁକି ଚିହ୍ନି ପାରିବେ ନାହିଁ? ସେ ତାଙ୍କ ନିଜ ଘର, ଆପଣଙ୍କ ଘର କୁହନ୍ତି କମୋ ଘର ବୁଝନ୍ତି। ତାଙ୍କ ନାସିକା ତଳର ଦାଢ଼ି ନିଶ ଲମ୍ବା ଓ ବହଳିଆ। ନିଶ ଦେଖିଲେ ମନେହେବ ସେ ଜଣେ ବଡ ଘର ଥିଲେ, ନିଶରୁ ଚିହ୍ନି ନ ହେଲେ ମଧ୍ୟ ଶାରୀରିକ ଗଠନ ଓ ଗୁଣରୁ ଅନୁମାନ ହେବ ସେ ଥିଲେ କୌଣସି ଦଳର ସର୍ଦ୍ଦାର। ମୋଟା ମୁହଁ ବଡ଼ା, ମୁଣ୍ଡ ଗଣ୍ଡା, ବର୍ଣ୍ଣ କଳା, ବେଶ୍ ହୃଷ୍ଟପୁଷ୍ଟ। ଏକୁଟିଆ ଦେଖିଲେ ଗଡିରେ ଭୟ ଲାଗିବ। ଲଣ୍ଡା ମୁଣ୍ଡରେ ମେଧାକ ଓ ସେହିଁ ପ୍ରକାର ଅକଲ୍ ତାଙ୍କୁ ସ୍ଵୀକାର କରି ଅନ୍ୟମାନଙ୍କ ଅକଲ୍ ସଙ୍ଗେ ଥରେ ଓଜନ କରିଥିଲେ ନିଜ ମନ ନିକିତିରେ। ସମୀକ୍ଷା କରେ ସିଦ୍ଧାନ୍ତ କଲେ ତାଙ୍କ ଅକଲ ସବୁଠାରୁ ଉନ୍ନତ ଧରଣର ଓ ଯୁଗୋପଯୋଗୀ।

ହେଲେ ଅଳଣ ବୁଢାବାବୁଙ୍କୁ କେବେ ଦେଖିଲେ ହସ୍ପାତାଳ ଦୋକାନରେ ଅର୍ଥ ମଣ୍ଡି ପରେ ଆସନରେ ବସିଥିବା ବେଳେ କେଶୁ ସ ଧରି ପାରିବେ ନାହିଁ ଯେ ଏ ବୁଢ଼ା ପାଳକ ନିଜ ସ୍ୱାର୍ଥ ପାଇଁ ଅନ୍ୟକୁ ହାତବାରି ଏକ ମାରଣାସ୍ତ୍ର ତିଆରି କରେ ଓ ତାହାର ମାଧ୍ୟମରେ ଲକ୍ଷ୍ୟଭେଦ କରେ। ତାଙ୍କର ଗୋଟିଏ ବଡ଼ ଗୁଣ ସେ

ସେ ଖୁବ୍ କମ୍ କଥା କୁହନ୍ତି ଓ ଆବଶ୍ୟକ ନ ଥିଲେ ଠମ୍ବୀର ଟୋକା ଭବିଷ୍ୟତ ଚିନ୍ତା କରୁଥାନ୍ତି । ଧନ ଦେଖିଲେ ହୃଦୟରେ କଳ୍ପନାର ନୂତନ ଉପାୟ ଉଦ୍ଭାବନ ମଧ୍ୟ ସେ ଚିନ୍ତା ମଧ୍ୟରେ ଖୋଜୁଥାଏ । ତାଙ୍କ ଗନ୍ଧଭରା ମନକୁ ମାପିବା ଓ ତହିଁରେ ପଶିବା କଷ୍ଟକର । ତାଙ୍କଠାରୁ ଅଧିକ କୌଶଳୀ ଲୋକ ସାମନା ସାମନି ଭେଟଘାଟ ହେଲେ ହାର ମାନିଯାନ୍ତି; ଗାଁ ଗୁଡ଼ ଗୁଡ଼ିଯାନ୍ତି । ତାଙ୍କ ନିଜ ଗାଁ କୃଷ୍ଣରୁଖମାରରେ ଜଣେ କୃଷୀର ଜମିରୁ ମାଛ ସଂଗ୍ରହ କରୁଥିବା ବେଳେ ହଠାତ୍ ଧରାପଡ଼ିଗଲେ । ସେଠାରେ ଥିଲେ ସାତଜଣ ଓ ସେ ଥିଲେ ଏକା । ପୁଣି ରାତି ହୋଇଥାଏ । ଏଣେ ସ୍ଲୋକ କଥା ହେଲେ ମଧ୍ୟ ମାଛ ଚୋର ବିଷୟ ପ୍ରକଟ ହୋଇଯିବ ଭୟରେ ରାତାରାତି ଧରମ ଝିଅ ଘରକୁ ଚାଲି ଆସିଲେ । ଅନ୍ତତଃ ତାଙ୍କ ଚରିତ୍ର ରକ୍ଷା ହୋଇଗଲା । ତାଙ୍କ ପରିବାର ମଧ୍ୟରେ ଦୁଇ ପୁଅ । ଅନେକ ଦିନୁ ସ୍ତ୍ରୀ ଝିଅକୁ ନେଇ ଯାଇଛନ୍ତି । ବଡ଼ପୁଅ ଧ୍ରୁବ ଦଣ୍ଡସେନା ପିତାଙ୍କ ସହିତ ମନୋମାଳିନ୍ୟ ଘଟିବାରୁ । ଚାଲିଗଲା ରାୟପୁର । ଆଉ ଫେରିଲା ନାହିଁ । ଆଜକୁ ପନ୍ଦର ବର୍ଷ ହେଲା ତା'ର କୌଣସି ଖୋଜ ଖବର ନାହିଁ । ସାନପୁଅ ଯଦୁମଣି ଦଣ୍ଡସେନା ଗାଁ ସ୍କୁଲ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରନ୍ତି । ବିବାହ ପରେ ଯଦୁମଣି ରହନ୍ତି ଗାଁରେ ଥିବା ଦୁଇ ବଖରା ଘରେ । ଆଉ ଗୋଟିଏ ବଖରା ବୁଢାବାପୁଙ୍କ ନିଜକୋଠରୀ । ହଳବଳଦ ଅଭାବ ଯୋଗୁଁ ଦୁଇ ଏକର ଜମି ନିଜେ ଚାଷ କରିବାକୁ ଅକ୍ଷମ, ଭାଗ ଚାଷରେ ଲଗାଇ ଦେଇଛନ୍ତି ।

ତାଙ୍କ ଧରମଝିଅ ସୁରମା ବିଧବା । ସ୍ୱାମୀ ନୀଳମଣି ଗଜେନ୍ଦ୍ର ସଂସାର ଛାଡ଼ିଲା ଦିନୁ ସେ ନିଜେ ହଳିଆମାନଙ୍କ ସାହାଯ୍ୟରେ ଜମି ଚାଷ ଦେଖନ୍ତି । ଗାଁ ଓ ଘରର ଭଲମନ୍ଦ ବୁଝନ୍ତି । ପୁଅ ହରେକୃ

ବାପ ଶ୍ରୀକ୍ଷ୍ମି ବୁଝନ୍ତି ଦିନ ପାଦେ ପାଦେ ଚାଲୁଥିଲେ । ପାଞ୍ଚ ବର୍ଷ ପୂର୍ବ ଛ ବର୍ଷ ଚାଲୁଛି । ଏକମାତ୍ର ସନ୍ତାନ, ବଂଶର ସର୍ବସ୍ୱ ଦୁଇ ଅକ୍ଷର ପଢ଼ି ସଂସାରର ବୋଝ ଧରୁ ଜାଣୁ—ଏ ଇଚ୍ଛା ସୁକୁମାର । ଧରମ ବାବା-ଙ୍କର ଇଚ୍ଛା ନାତିଟି ମାମୁଁ ମାଇଁଙ୍କ ତତ୍ତ୍ୱାବଧାନରେ ରହି ଉଚ୍ଚପ୍ରାଥମିକ ଶିକ୍ଷା ଶେଷକରୁ । ମା ପୁଅ ଏଥିରେ ଖୁସିହେଉଛନ୍ତି । ସୁରମା ସମସ୍ତ ଖର୍ଚ୍ଚ ବହନ କରିବେ । ହରେକୃଷ୍ଣ ଛୋଟ ପିଲା ହେଲେ କଣ ହେଲା ତାର ମନ ମାନୁଛି, ସେ ଅଜାଙ୍କ ସଙ୍ଗେ ମାମୁଁ ଘରକୁ ଯିବ । ଟକୁଚକ୍ ହୋଇ ଯାଉଛି ।

## (୩) ରମେଶ ଦାଦାଙ୍କ ଆବିର୍ଭାବ

ଧାନ ପାଚିଲେ ବୁଢ଼ାବାବୁଙ୍କ ମନ ପାଚେ; ଧରମ ଝିଅଙ୍କ ଗାଁ ବାଟ ସିଧା ସଳଖ ଦିଶେ; କସ୍ତୁମଞ୍ଚାପୁର ତାଙ୍କୁ ସ୍ୱାଗତ କରେ । କାମ ଧନ୍ଦାରେ ସେ ବ୍ୟସ୍ତ ରହନ୍ତି । ଏଇଟା ପୌଷ ମାସର କଥା । ଦୁଇ ଦିନ ଆଗରୁ କୁହୁଡ଼ି ଘାଙ୍କି ଥିଲା ଚାରିଆଡ଼େ । ସହର ଓ ଗାଁ ଲୋକେ ସୂର୍ଯ୍ୟ ଦେବଙ୍କୁ ଭଲ ଭାବରେ ଦେଖି ନ ଥିଲେ । ସକାଳ ଆଠଟା ପର୍ଯ୍ୟନ୍ତ କୁହୁଡ଼ି ଥିଲା । ଏ କୁହୁଡି ଭିତରେ କିଏ କେତେ-ଦୂର ପହଁଚି ଗଲା ତାହା ସ୍ପଷ୍ଟ ଜଣାନାହିଁ । କିନ୍ତୁ ବୁଢ଼ାବାବୁ ତାଙ୍କର କାର୍ଯ୍ୟ ଶେଷ କରି ଦେଇଛନ୍ତି । ଆକାଶ ନିର୍ମଳ ହେବାକୁ ଲାଗିଲା । କୁହୁଡ଼ି ଦୂରେଇ ଯାଉଥାଏ । ଦିନ ଏଗାରଟା ବେଳକୁ ସମ୍ପୂର୍ଣ୍ଣ ପରିଷ୍କାର ହୋଇ ଯାଇଥିଲା । ସୂର୍ଯ୍ୟ କିରଣ ଚିକ୍ ଚିକ୍ କରୁଥାଏ । ପିଠିକି ଖରା ଆରାମ ଲାଗୁଥାଏ । ବହୁତ ଲୋକ ନିଜ ନିଜ ବାଟରେ ଚାଲିଲେଣି । ଘଣ୍ଟୁଆ ଚାଲୁଥିଲା । ପଛକୁ ଅନାଇଲା ବୁଢ଼ାବାବୁ ଦିଶୁନାହାନ୍ତି । ନିଜେ ନିଜେ କହି ପକାଇଲା—"ହଁ, ଆସୁଥିବେ ପରା । ଟିକିଏ ଅପେକ୍ଷା କଲେ ଭଲ ହୁଅନ୍ତା" ।

ରସ୍ତାର ଗୋଟିଏ ଧାରକୁ ତେନ୍ତୁଳି ଗଛ । ତା ପାଖକୁ ଲାଗି ଗୋଟିଏ ଜାମୁଗଛ । ଅନ୍ୟ କଡରେ ସାମନା ସାମନି ଆମ୍ବଗଛ । ଗଛ ଗୁଡ଼ିକର ଛାଇ ପିଚୁରସ୍ତାରେ ବଙ୍କାଚିତ୍ର ହୋଇ ସ୍ଥାନଟିକୁ ଶୀତଳ କରୁଛି । ଅଧା ଛାଇ ଅଧା ଖରା । ଏଇଠି ସନ୍ଧ୍ୟା ସମୟକୁ ଠାକୁରେର ଗଡ଼ୁଆ ଗାଡ଼ିକୁ ରଖି ଅଟକି ଗଲା । ମୁଣ୍ଡରେ ବାନ୍ଧିଥିବା ସାଦା ଗାମୁଛାର ଚଉଡ଼ା ପିନ୍ଧେଇ ଝାଡ଼ି ଝୁଡ଼ି ହେଲା । ବସିଗଲା ବୁଢାବାବୁଙ୍କ ଅପେକ୍ଷାରେ । ଚଳଚଳେ ଗୁଡ଼ାଏ କଥା ଘୂରୁଥାଏ । ତେଣୁ ଭିତରେ ବୁଢାବାବୁଙ୍କ କଥାଟିଏ ଥିଲା ।—"ବୁଢାବାବୁ ନିଶ୍ଚୟ ଅସୁଥିବେ । ହାଙ୍ଗରେ ଗାଡ଼ି ପୂରାକୁ ଆସୁଥିବେ । ବଗ୍ଗୁଡ଼ ଗଳିଆ ଟେଙ୍ଗିଟେ ମଧ୍ୟ ଆସୁଥିବ । ଆସୁଥାନ୍ତୁ ହୋ ସେ ଯାହେଉ । ଘାଞ୍ଚକୁ ଆସିଲେ ହାଁ ହୋଇ ପିଇ, ଉଦ୍ଧି ଦେବ । ବୁଢାବାବୁ ସାଙ୍ଗରେ ଛୁଟିଟି ଯାଉଥିଲେ କୌଣସି ଅସୁବିଧା ହେବ ନାହିଁ । କାହାଁ ଘର କେ ବୋଲିଲଣି ? ମୁଁ ଗୁଣର ବୋଲି ବୋଲୁଛି ପିନା । ମୋ ସଂସାରର ଘର ତ ଦେଖି ହେଲେ ହୋଲିବାକୁ ଆସୁ ନାହାନ୍ତି ? ବୁଢ଼ାବାବୁ କହିଛନ୍ତି, ମାଳବାକୁ ଦେଖ—ସତର୍କ ହୋଇ ଯାଉଥିବୁ ବାଟରେ ଅପେକ୍ଷା କରିବୁ । ତାଙ୍କ କଥା ମାନୁଛି । କୁଦୁରୁ ରଣାକୁ ପିନା ଚଢ଼ଦେଲେ । ଏ ଟେଙ୍ଗିଟେ ନାଏକକୁ କାହିଁକି ଏତେ ବିଶ୍ୱାସ କରୁଛନ୍ତି ····· ଗୁଡ଼, ଗୁଡ଼; ଆମର ସେଥିରେ କଣ ଅଛି । ଗଳ ଉପର କଅଁଳ ଅଛି । କଅଁଳର ପାଣି ଯେଉଁ ପଟକୁ ଯିବାକଥା ଯିବ । ନାଳିଗାଣି ଶୋଷିନେବା କଥା ଶୋଷିନେବ । ନ ପାଚିଲେ କଅଁଳରେ ପାଣି ରହିବ । ଶାଗ, ମରିଚ ଫଳିବା କଥା ଫଳିବ । ପ୍ରକୃତି ବିକୃତି ହେଲେ ଧାନ ଓ ଶାଗ ସବୁଜ ଗଛକୁ ମଧ୍ୟ ପୋକ ଖାଏ ।

"ଏଁ,·· ··· ଏ ଘଟଣ କିଏ ଆସୁଛି । ହଁ ··· ହଁ, ଉମେଶ

ଦାଦା ।" ଭାତୁଆ ଘାଣ୍ଟି କରି ଡାକିଲା —"ଏ ଦାଦା, ରମେଶ ଦାଦା, ଝୁଆଉ ଚଳି ।"

ରମେଶ ବାବୁ ରାସ୍ତା ଉପରକୁ ଉଠି ଆସୁଥିଲେ ସମ୍ମୁଖ ଆମ୍ବ-ଗଛ ତଳକୁ । ମଗ୍ନ ଥିଲେ କୌଣସି ଗୋଟିଏ ଗଭୀର ଚିନ୍ତାରେ । ତାଙ୍କ ଶୂନ୍ୟ ଆଖି ଉଡ଼ିଗଲା ଭାତୁଆ ଉପରେ । ପରିଚିତ କଣ୍ଠସ୍ୱର । ପ୍ରକୃତିସ୍ଥ ହୋଇ ଦେଖିଲେ ଭାତୁଆ ନିଜ ଚିହ୍ନା ଲୋକ, ଅତି ଆପଣାର । ହସି ହସି କହିଲେ—"ଭଲରେ ଥାରେ କାଳିଆ । ଏତେବେଳେ ଘର ଧରି କୁଆଡ଼େ ବାହାରିଲୁ ? ବୁଢ଼ାବାବୁ କୁଆଡ଼େ ଗଲେ କି ?"

—"ପଛରେ ଆସୁଛନ୍ତି, ବହୁତ ବାଟରେ ଅଛନ୍ତି ।"

—"ଆଚ୍ଛା; କାଳିଆ, କଣ ହେଲାକି ? କଥାଟାର ସତ ମିଛ କିଛି ଜଣାଗଲା ନାହିଁ ।"

—"ହଁ, ଦାଦା" । × × ×

କାଳିଆ ରମେଶଙ୍କୁ ହେସ୍ତ ମାନ୍ୟରେ ଡାକେ । ଏକାଗାଁର ଲୋକ । ଦେଖା ସାକ୍ଷାତ ହେଲେ ଘରୋଇ କଥା, ଗାଁ କଥା, ସହର ସମାଚାର, ଗୌନ୍ତ୍ୟାଣୀଙ୍କ ମନୋବୃତ୍ତି, ବୁଢ଼ାବାବୁ ଓ ଲୋକଙ୍କ ବିଷୟରେ ଦୁଇ ଚାରି ମିନିଟ୍ ଆଲୋଚନା କରନ୍ତି । କଥାଟା ସରେ ନାହିଁ କେବଳ ଦିନେ ଦିନେ ଘଣ୍ଟେ ଅଧଘଣ୍ଟା ଲାଗିଯାଏ । ଭଲ ମନରେ ଦୁହେଁ ଦୁହିଙ୍କ ଘରେ ଠିଆ ହୁଅନ୍ତି ।

ରମେଶ ବେହେରା ଗାଁର ଜଣେ ନାମଜାଦା ଧନୀ ରଇତ, କିନ୍ତୁ କାଳିଆ ଗରିବ ଗୌନ୍ତ୍ୟାଣୀଙ୍କ ଚାକର । ଗୋଟିଏ ବଂଶର ।

ଆଜକୁ ଗୁଣବର୍ଷ ହେଲା ଗୌରୀଶାନୀଙ୍କ ପାଖରେ ଗୁହର କାମ କଲା ଦିନୁ ଧରମବାବ ବୃନ୍ଦାବାବୁଙ୍କ ଘର ନିଆ ଅସା କରେ । ଲେଙ୍ଗ୍‌ଟ୍ ନାଏକ ବୃନ୍ଦାବାବୁଙ୍କ ଦକ୍ଷିଣ ହସ୍ତ । ତା ପାଖରେ ଧାନ ଗୋଦାମ ଗୁହ । ଆଜି କାଳିଆ ବୃନ୍ଦାବାବୁଙ୍କ ଘର ନେଇ ଆଗେ ଆଗେ ବାହାର ଅସିଛୁ । ବୃନ୍ଦାବାବୁ କାଳିଆକୁ ଉପରେ ଉପରେ ଭଲ ପାନ୍ତି, କାରଣ ସେ ରମେଶର ସାଙ୍ଗ । କାଳିଆ ପାଖରୁ ରମେଶର ଖବର ଜାଣିବା ପାଇଁ କୌଶଲ କରନ୍ତି । କାଳିଆ ସବୁ କଥା ସିନା କହିବ କିନ୍ତୁ ତା'ର ଦାତା ବିଷୟରେ କିଛି କହିବ ନାହିଁ । ଯାହା ସଂଗ୍ରହ କରନ୍ତି ଲେଙ୍ଗୁଟ ପାଖରୁ ତାହା ଯଥେଷ୍ଟ ନୁହେ । ସବୁ କଥା ଠିକ୍ ଠିକ୍ ବୁଝି ପାରନ୍ତି ନାହିଁ । ଯାହା ବୁଝି ପାରନ୍ତି ସେଥିରୁ ଜାଣିଛନ୍ତି ରମେଶ ଭଲ ପଢୁଥିଲେ କିନ୍ତୁ ଏକାଦଶ ଶ୍ରେଣୀରୁ ପୋଥିରେ ଦଉଡ଼ି ବନ୍ଧିବାକୁ ହେଲା, କାରଣ ବାପାଙ୍କର ମୃତ୍ୟୁ । ଗୃହଜମି କିଏ ଦେଖିବ? ପଢାଶୁଣା ଗୃହକାମରେ ଲାଗିଛନ୍ତି ।

କାଳିଆ ବୃନ୍ଦାବାବୁଙ୍କଠୁ ଶୁଣେ— "ସଂସାରରେ ଧର୍ମ ଦରିଦ୍ର ସାର୍ଥକ୍ୟ କେହି ବୁଝିଲେ ପାରିବେ ନାହିଁ । ନ ବୁଝିଲେ ଦେଶରେ ଶାନ୍ତି ମିଳିବ ନାହିଁ" । କାଳିଆ ଭୂମିହୀନ । ଆଶା ଅଛି କାଳେ ଗୌରୀଶାଣୀ ମା ଖଣ୍ଡେ ଅଧେ ଜମି ଦେଇଦେବେ ଏଣୁ ତାଙ୍କ ଆଶ୍ରା କରିଛି । ଭଲକାମ ଦେଖାଇଲେ ଖଣ୍ଡେ କାଆଁର ଦେବେ ବୋଲି ଗୌରୀଶାଣୀ ମା କହନ୍ତି । ବୃନ୍ଦାବାବୁ ଛଳନା କରି କାଳିଆକୁ ବୋଧ କରନ୍ତି--"ତୁ କାଳିଆ, ଦିନେ ସମସ୍ତଙ୍କଠୁ ବଡ଼ ହଳିଆ ନିଶ୍ଚୟ ହେବୁ । ତୋର ଉନ୍ନତି ଅଛି । ଧରମ ଝିଅକୁ କହି ଏକ ଏକର ଜମି ଓ ଭିଟାଜମି ଖଣ୍ଡେ ଠିକ୍ କରି ଦେବି । ବିଶ୍ୱସ୍ତ ହୋଇ ଥା" ।

ପ୍ରକୃତରେ ଏତେ ଗୁଡ଼ାଏ ଜମି ବିଧବା ଲୋକ କଣ

କରିବ ? ଘୃଷ ଜନ୍ତ ଘାଣ୍ଟିଲେ ତ ହେବ । ଗୋଟିଏ ବୋଲି ଦୃଷ୍ଟ । ଦୁଖ ଅଷର ପଢ଼ିଲେ ବଡ ଘୃକାର ଖଣ୍ଡ୍ର କରିବ । ଘାଠ ହେଁ ସମସ୍ତେ ତ କରୁଛନ୍ତି । ଶଳନ ଏକର ଜମିରୁ ବାଛି ତାଙ୍କୁ ହଗୃଷ ଏକର ଲେଖି ଟୋକାଟକ ଭଡ଼ପ୍ସୁ କରି ଦେଲେ ଚଳିପିବ । ଭଡ଼ପ୍ସୁ କଲୁ ବେଳକୁ କାଳିଆ ଝଣ୍ଡେ ଘାଟରେ ଘାଇପିବ । ଏ କଥା ମନେ ମନେ ଭାବି ସେ ଭାଗ ଝୁମି ହୁଏ କାନ୍ତି ରମେଶ ଦାଦାଙ୍କ ଉପରୁ ବିଶ୍ୱାସ ତୁଟାଇ ପାରେ ନାହିଁ । ତାଡକୁ ଜମି ଆସେ ନାହିଁ କ ବୁଡାବାବୁ ଏଥର ସେ କଥା ଶିପି ବାହାର କରି ପାରନ୍ତି ନାହିଁ । ସେଉଁ କଥା କହିଲେ ମଧ୍ୟ ରମେଶ ପାଖରେ ତା'ର ସମ୍ମାନ "ହଁ ଦାଦା" —

—"ହଁ, ଦାଦା ! ତୁମେ ତ ସବୁ କଥା ଜାଣିଛ । ତୁମକୁ କାହୁଁ ଅଛପା ନାହିଁ । ତୁମକୁ ସେ ନିନ୍ଦା କରନ୍ତି । କହନ୍ତି—"ଲେଙ୍ଗୁଟେ ଘ ଜମିକୁ ରମେଶ ଉପରେ ଉପରେ ପଞ୍ଚ ମାସ ନେଇ ଯାଉଛି । ସେଥି ପାଇଁ ଲେଙ୍ଗୁଟେ ଅବୁଝାରେ ଧନ କାଟୁଛି, ତା ସମ୍ମାନ ଚଳିକୁ ଖସି ପଡୁଛି ।"

—"ଆରେ କାଳିଆ, ତୁ ଜାଣିଛୁ ମୁଁ ନଗଦ ଦୁଇ ହଜାର ଟଙ୍କା ଗଣି ଜମି ବନ୍ଧକ ରଖିଛି । ଟଙ୍କା କଣ ମାଗଣା ପଡୁଛି । ଟଙ୍କା ନ ଦେଲେ ଜମି ମୋର ନାମରେ ରେଜେଷ୍ଟ୍ରେସ ହୋଇପିବ । ଏ ବୁଢା କେତେ ଗଭୀରରୁ ଟାଣି ପିଉଛି । ମୋ ଭାତରେ କଣ ହାତ ଦେବାକୁ ଯାଉଛି ? ତୁ ଯିବ ଆଉ ଥିବୁ, ଗାଁରେ ଅଶାନ୍ତି ଖେଳେଇ ଦେବ" ।

—"ହଁ, ଦାଦା !"

## (୪) ଲେଙ୍ଗୁଟି, ଋଣ ଶଙ୍କିତ

ଲେଙ୍ଗୁଟି, ଭଣା ଗାଁର ଜଣେ ମୂଲ। ତା ପରିବାର ମଧ୍ୟରେ ସ୍ତ୍ରୀ ଓ ଦୁଇ ଝିଅ। ବଡ଼ଝିଅ ତମ୍ବଣୀ, ବୟସ କୋଡ଼ିଏ। ସାନଝିଅ ତାରାମଣି, ବୟସ ସତର ବର୍ଷ ଅତିକ୍ରମ କଲାଣି। ଦୁହେଁ ବିବାହ ଯୋଗ୍ୟା ହୋଇ ସାରିଛନ୍ତି। ଏ ଗୋଟାଏ ଯୋଗ୍ୟ ଚିନ୍ତାର ବିଷୟ ଲେଙ୍ଗୁଟି ପକ୍ଷରେ। ଗତ ମନ୍ୱନ୍ତରରେ ଚଳାଚଳ ଅସୁବିଧା ହେବାରୁ ଅତି କୁଣ୍ଠିତ ଚିତ୍ତରେ ପିତୃ ଅର୍ଜିତ ନିଜ ଅର୍ଦ୍ଧାଂଶରୁ ଅଧିକ ଏକର ବାନ୍ଧ ହୋଇ ରମେଶ ବେହେରା ପାଖରେ ବନ୍ଧକ ରଖି ଦୁଇ ହଜାର ଟଙ୍କା ନେଇ ଆସିଥିଲା। ଚୁକ୍ତିନାମା ଲେଖା ହୋଇଛି ତିନି ବର୍ଷ ମଧ୍ୟରେ ସମୂଳସୁଧ ନ ପରିଶୋଧ କଲେ ରମେଶ ନାଁରେ ଜମି ରେଜିଷ୍ଟ୍ରେସନ କରିଦେବ। ଏଥିପାଇଁ ଗାଁଲୋକ ସାକ୍ଷୀ ଅଛନ୍ତି। ଏହି ଜମି ଉପରେ ବୁଢ଼ାବାବୁଙ୍କ ଆଖି। କେମିତି ଟଙ୍କା ତିନି ହଜାର ହାତକୁ ଆସିଲେ ଲେଙ୍ଗୁଟିକୁ ପଟେଇ ରମେଶକୁ ଜମିଟି ବେଦଖଲ କରିଦେବେ ଓ ନିଜନାଁରେ ଜମି ଦାଖଲ ଖାରଜ କରି ନେବେ।

ଲେଙ୍ଗୁଟି ପାଖରେ ଥିବା ଆଉ ପାଞ୍ଚ ଏକର ଜମିକୁ ତା' ଭାଇ ଟେଣ୍ଡେଲା ବଣାକୁ ଭାଗ ଚାଷରେ ଦେଇଛି। ଚୌଧୁରୀଙ୍କ ପାଖରେ ମାସକୁ ତିରିଶ ମାଣ ଧାନରେ ଗୁମାସ୍ତା କରୁଛି। ଏଥିରେ ତା' ତିନି ପ୍ରାଣୀ କୁଟୁମ୍ବ ଚଳନ୍ତି। ଜମି ମୁକୁଳେଇବା ତା ପକ୍ଷରେ ସହଜ ନୁହେଁ। ପାଞ୍ଚ ହଜାର କେଉଁଠୁ ମିଳିଲେ ବନ୍ଧ ଫେରି ଦଅନ୍ତା। ଅନାବୃଷ୍ଟି ହେବାରୁ ଗାଁ ଗୋଲା ସମିତିରୁ ଦୁଇ ଭରଣ ଧାନ ଓ ତିନିଶହ ଟଙ୍କା ଋଣ ଆଣିଥିଲା। ସେତକ ମଧ୍ୟ ସେ ପରିଶୋଧ କରିନି। ଏବଇ ତାଲୁକଦାରଙ୍କ ଅଫିସରୁ ଜମି ଉନ୍ନତି ପାଇଁ ପାଞ୍ଚଶହ ଟଙ୍କା ତକାବି ଋଣ ବାବଦକୁ ରମେଶ ବେହେରା ମତେଇ ଦେଇଛନ୍ତି।

ସରକାରୀ ପାଉଣା ମଧ୍ୟ ଏ ପର୍ଯ୍ୟନ୍ତ ପରିଶୋଧ ହୋଇ ନାହିଁ । ସରକାରୀ ନୋଟିସ ତା ଉପରେ ଜାରି କରା ଯାଇଛି । ନ ଦେଲେ ଜମି ନିଲାମ ହେବ । ରଣାଙ୍ଗଣରେ ଖରମାନ୍ତ ଲେଙ୍ଗ୍‌ଟୁ ବୁଢ଼ାବାବୁ ଆସିଲା ବେଳୁ ଅନୁମାନ କରନ୍ତି ସେ ଜଞ୍ଜାଳ ସାଗରରୁ ପାର ହୋଇ-ଯିବ । ବୁଢ଼ାବାବୁ ତା ଆଖିରେ ଗୋଟିଏ ବଡ଼ ସମୁଦ୍ର ଜାହାଜ । ଦୁହିଙ୍କ ବୁଦ୍ଧିବଳରେ ଜାହାଜ ପାର ହୋଇ ଯିବ, ବୁଢ଼ାବାବୁ ସଙ୍ଗେ ତା'ର ହାତର ଲାଞ୍ଚ ରହିଛି । ନୌକା ପଡ଼ିଲେ ଗୋଦାମ ଘର ଧାନ, ଗୁଡ଼ଖଳି, ମୁଗ ଡହସୁ ହୋଇ ଦୁହିଙ୍କ ମଧ୍ୟରେ ପଇସା ସମାନ ଭାଗ ହୋଇଯାଏ । ବୁଢ଼ାବାବୁ ମଧ୍ୟ ଲେଙ୍ଗ୍‌ଟୁ ପରି ଜଣେ ଶିକ୍ଷିତ ସୈନ୍ୟଙ୍କୁ ହାତରେ ପାଇ ଖୁବ୍ ଖୁସି । ଯୁଦ୍ଧର ଅଭିଯାନରେ ସେ କଷ୍ଟକୁ ଜାଣିବେ । ଅଭାବରେ ସ୍ୱଭାବ ନଷ୍ଟ ହେବା କଥା । ଲେଙ୍ଗ୍‌ଟୁ ପାଖରେ ଘଟିଛି । ଧାନ ଗୋଦାମରୁ ଧାନ ମାପ ହେଲେ ଗୋଟିଏ ପୁଡ଼ାରୁ ପାଞ୍ଚମାଣ ଭାଙ୍ଗି ଦେଖାଇ ଦିଏ । ଗୌନ୍ତ୍ୟାଣୀ ଏ ବିଷୟ ଜାଣି ପାରନ୍ତି ନାହିଁ । ଧାନ ପୁଡ଼ାଭିତରେ ଶୁଖିଯାଇ ଏପରି କମିଯାଏ — ତାଙ୍କର ଧାରଣା । ବୁଢ଼ାବାବୁ ଏ ଧାରଣାକୁ ବଦ୍ଧମୂଳ କରି ଦିଅନ୍ତି—"ସବୁଠି ଏମିତି ହୁଏ ଲୋ ଧରମଟିଅ । ଏଇଟା ସାଧାରଣ କଥା" ।

ଏ ବର୍ଷ ତା' ବନ୍ଧୁବାନ୍ଧବମାନେ ଧରି ବସିଛନ୍ତି ଯେ ବଡ଼ଝିଅ ଡମ୍ବୁଣୀକୁ ଯେପରି ହେଲେ ବାହାଦେବ । ଅବିବାହିତା ଝିଅକୁ ଘରେ ରଖିବା ବିପଦ୍‌ଜନକ । ଘିଅ ଝିଅ ପ୍ରାୟ ସମାନ । ନିଆଁ ବାଜିଲେ ଘିଅ ତରଳିଯାଏ । କେତେବେଳେ କେଉଁ ଯୁବକଙ୍କର ଆକର୍ଷଣରେ ଡମ୍ବୁଣୀ ଲେଙ୍ଗ୍‌ଟୁର ଇଜ୍ଜତ ହାନି କରିଦେଇ ପାରେ । ତାଙ୍କ ସ୍ତ୍ରୀ ମଧ୍ୟ ଦୁଇ ଚାରିଥର ଏକଥା କହିଲେଣି । ଡମ୍ବୁଣୀର ମଧ୍ୟ ହାବଭାବ ଅତି ତରଳ ଓ ଚଞ୍ଚଳ ହୋଇ ଉଠିଛି । ଆଜ

ଲେଙ୍ଗୁଟୁ ମୁଣ୍ଡରେ ଶଢଚନ୍ଦ୍ରା, ମୁଣ୍ଡରେ ଚୋଟିଏ ଯାତ୍ରା । କୁଆଡୁ ଟଙ୍କା ଓ ସୁନା ଆସିବ ? ଜମି ମୁକ୍ତ କରିବାକୁ ହେବ, ଝିଅର ବାହାଘର ହେବ, ଚକାଖୀ ଋଣ ଓ ଗୋଳର ଋଣ ପରିଶୋଧ କରିବାକୁ ହେବ । ଟଙ୍କା ସୁନା ଦେଖିଲେ ତା ଆଖି ଦୁଇ ଗୁଡ଼ ମିନଟ୍ ସେଠି ରହିଯାଏ । ଭାବେ ଏତକ ଆସନ୍ତା କି !! ଚୌଧୁରାଣୀ ତାଙ୍କ ହାତ ବାକ୍ସ ଫିଟାଇଲା ବେଳେ ଥରେ ଦୁଇଥର ଦେଖି ତା ମନରେ ଓ ହୃଦୟରେ କେମିତି ଚୋଟାଏ ଧଡ଼କ୍ ଆସିଛି ।

ଧନକର କଥା । ନୂଆ ଘୋଡ଼ାହଳ କିଣା ହୋଇ ଆସିଛି । ଲେଙ୍ଗୁଟୁ ଗୋଦାମ ଘର ପିଣ୍ଡାରେ ବସି ଘୋଡ଼ାହଳଙ୍କୁ ଦାନା ଖୁଆଉଥାଏ । ମୁଣ୍ଡରେ ହାତ ଦେଇ ବସିଥାଏ । ବୁଢ଼ାବାବୁଙ୍କୁ ଦେଖି ନମସ୍କାର କଲା । ବାବୁ ପଚାରିଲେ—"କଣ ହେଲା ଲେଙ୍ଗୁଟୁ, ଏପରି ବିଷାଦ କାହିଁକି ?"

—"ମୋ ମୁଣ୍ଡ ବଥା କଣ କହିବି ? ଆଜ୍ଞା, ଜମି ବନ୍ଧା ପଡ଼ିଛି, ଚକାଖୀ ଋଣ ବାକି ପଡ଼ିଛି । ଗୋଳରେ ମୁହଁ ଦେଖାଇ ପାରୁନାହିଁ । ବଡ଼ଝିଅ ଦୁଇଟି ଘରେ......"

—"ଏଥିପାଇଁ ଏ ମୁଣ୍ଡବ୍ୟଥା ? ଉପାୟ କଲେ କଣ ଔଷଧ ମିଳିବ ନାହିଁ ? ଲେଙ୍ଗୁଟୁ, ତୁ ସେମିତି ହେଲେ ହେବ ? ଆସ୍ତେ ଆସ୍ତେ ସବୁ ହୋଇଯିବ ..... ରୋଗ ଛାଡ଼ିଯିବ ।"

—"ଆପଣଙ୍କ ଦୟାରେ ହେଲେ ଏ ରୋଗ ଛାଡ଼ୁ । ଔଷଧ ହେଲେ କହନ୍ତୁ ?"

—"ଏ ଘୋଡ଼ା ହଳ ଦେଖୁଛୁ ?......କେତେ ମୂଲ୍ୟ ମିଳିବ ?

ଲେଙ୍ଗୁଟୁକୁ ବୁଝିବାକୁ ଆଉ ବାକି ରହିଲା ନାହିଁ । ଏ ନୂଆ ଘୋଡ଼ା ହଳକୁ ପାଇ ବଡ଼ ନାଚ ସଫେଇ କରିବାକୁ ହେବ । ଟିକିଏ ଚିନ୍ତା କରି ଲେଙ୍ଗୁଟୁ କହିଲା—"ଆଜ୍ଞା ହେବ ଯେ......ସେ କାମ କଣ କରି ହେବ ?"

—"କେତେ ଗୋଟି ବକାଳୀ ଅଛନ୍ତି । ଏକା ରାତିରେ ପାର ହୋଇଯିବ" ।

—"ଆଜ୍ଞା, ହେବ ଯେ ..... ଏତେ ବଡ଼ କଥା ସମ୍ଭବ ?"

—"ଆଃ ! ଲେଙ୍ଗୁଟୁ" ବୁଢ଼ାବାବୁ ତା ଦେହରେ ହାତମାରି କହିଲେ—"ତୁ ତିନଶହ ମୁଁ ତିନଶହ"

—"ଆଜ୍ଞା, ଆଠଶହରେ କଣ ହୋଇଛି ପରା"

—"ଆଃ, ଛାଡ଼ିଦେବ ଦୁଇଶହ, ଯେ ନେବ ସେଇଟା ତାର ଲାଭ" ।

ଲେଙ୍ଗୁଟୁ ଏଥିରେ ରାଜି ପଡ଼ିଗଲା । ଛୁଟି ନେଇ ସହରକୁ ଚାଲି ଆସିଲା । ଜଣେ ଦୁଇଜଣ ସନ୍ଦିତ କଥାବାର୍ତ୍ତା ହୋଇ ଗାଁକୁ ଫେରିଲେ । ସନ୍ଧ୍ୟାରେ ତା ଘରେ କୁଣିଆ ହେଲେ ଦୁଇଜଣ ଲୋକ । ଘୋଡ଼ାହଳକୁ ଦାନା ଖୁଆଇ ଗୁହାଳବାହାର ଖୁଣ୍ଟରେ ବାନ୍ଧିଦେଲା । ଘରକୁ ଗୁଞ୍ଜିଗଲା । ଅତିଥି ସକାଳ ଉଦ୍ଦରେ ନଗଦ ଛ ଶହ ଗଣି-ଦେଇ ପଶ୍ଚିମ ଦିଗକୁ ଅତିଥି ଦୁଇଜଣ ଘୋଡ଼ାହଳ ନେଇ ବାହାରି ଗଲେ । ମଧ୍ୟରାତ୍ର ବେଳକୁ ଗାଁ ଶୂନ୍‌ଶାନ୍ ।

ସକାଳ ହେଲା । ଆଠଟା ବେଳକୁ ଜଣାଗଲା ନୂଆ ଘୋଡ଼ାହଳ

ନାହିଁ । କୁଅଁଟେ ଚଳେଇ ଯାଉଛି । ବନ୍ଧା ଦଉଡ଼ି ଛିଣ୍ଡେଇ ଭାଗିଛି । ଚୌଧୁରାଣୀ ଖୁବ ଦୁଃଖିତ ହୋଇ ଲେଙ୍ଗୁଟୁ ଓ ଅନ୍ୟ ଦୁଇଜଣ ହଳିଆକୁ ଖୋଜିବା ପାଇଁ ପଠାଇଲେ । ସେମାନେ ଗୃହ ଛ, ଘାସ ପାଇଁ ଖାଦ୍ୟ ନେଇ ପୂର୍ବଦିଗକୁ ପ୍ରଥମେ ଖୋଜିବା ପାଇଁ ଗଲେ । ଏକ ସପ୍ତାହ ଉତ୍ତାରେ ଫେରିଆସି ଖବର ଦେଲେ ହୋଡ଼ହଳ ମିଳିଲା ନାହିଁ । ବୁଢାବାବୁ ଥାନେ ଆସି ହଳ ହଜିଥିବା ରିପୋର୍ଟ ଥାନାବାବୁଙ୍କୁ ଦେଲେ । ଥାନାବାବୁ ଅନୁସନ୍ଧାନ କରିବା ପାଇଁ ପ୍ରତିଶ୍ରୁତି ଦେଲେ । କେତେ ହାଟ ବଜାର ଅନୁସନ୍ଧାନ ଉତ୍ତାରେ ଜଣେଇ ଦିଆଗଲା ହଳ ମିଳିବା ସମ୍ଭାବନା ନାହିଁ ।

ଗୋଟିଏ ଘଟଣାରେ କୃତକାର୍ଯ୍ୟ ହେବାପରେ ଲେଙ୍ଗୁଟୁର ସାହସ ବଢ଼ିଗଲା । ଅନ୍ୟଦିନ କଥା ବୁଢାବାବୁ ଓ ଲେଙ୍ଗୁଟୁ ଆସୁଥିଲେ ପୋଖରୀବାଟ ଦେଇ । ସିଡ଼ି ମୁଣ୍ଡରେ ବସିଥିଲା ରାମ ସାହୁର ସାତ ବର୍ଷର ଝିଅ । ତା ବେକରେ ଅଛି ଗୋଟିଏ ହାର । ଆଙ୍ଗୁଠି ଦେଖାଇ ବୁଢ଼ାବାବୁ ଲେଙ୍ଗୁଟୁକୁ ଇସାରା ଦେଇ କହିଲେ— "ତିନିଶହ ପାଇଲ, ଆଉ ଏ ହାରରୁ ଶହେ ଲେଖାଏଁ କଣ ମିଳିବ ନାହିଁ ?

ସେ ଦିନ ରମେଶ ହେତୁଦାସ ଘରେ ଦଣ୍ଡନାଚ ହେବା ସ୍ଥିର ହୋଇଥିଲା । ଏ ମୌକା ଛାଡ଼ିବା ନୁହେ—ଲେଙ୍ଗୁଟୁର ମନକୁ ପାଇଲା । ବୁଢ଼ାବାବୁ ଓ ଲେଙ୍ଗୁଟୁ ଧରମଣିଅ ପାଖକୁ ଆସି ଆଉ ହଳେ ହୋଡ଼ହଳ ଖରିଦ୍ କରିବା ପାଇଁ କହିଲେ । ସେ ହଳ ନ ଆସିଲେ ଚାଷ କାମ ଚଳିବ ନାହିଁ । ଗାଡ଼ିରେ କାଠଣା ଆଦୌ ଚଳିପାରିବ ନାହିଁ । ଚୌଧୁରାଣୀ ରାଜି ହୋଇଗଲେ ଏ ପ୍ରସ୍ତାବରେ । ନଗଦ ଆଠଶହ ଟଙ୍କା ଗଣି ଦେଇ ଲେଙ୍ଗୁଟୁକୁ ପାହାନ୍ତିଆରେ

ପାଟଣାପୁର ଯିବାପାଇଁ ଆଦେଶ ଦେଲେ । ଦୁଇଜଣ ହଳିଆ ମଧ୍ୟ ଲେଙ୍ଗୁଟି ସଙ୍ଗେ ପୋଡ଼ହଳ କିଣିବାକୁ ଯିବାପାଇଁ ଠିକ୍ ହେଲେ ।

ଆଜି ସନ୍ଧ୍ୟା ସମୟ । ଗୋବର ପାଣିରେ ଲିପାହୋଇ ପରିଷ୍କାର ହୋଇଛି ରମେଶ ବାବୁଙ୍କ ଦୁଆର ଘର । ଗାଁ ଲୋକେ ଗୋଟି ଗୋଟି ଆସିବାକୁ ଲାଗିଲେ । ମେଦନୀପୁର ଦଣ୍ଡନାଚ ଆସି ପହଞ୍ଚିଲେ ରାତିକ ଗୋଟାଏ ଟଙ୍କା ଚୁକ୍ତିରେ । ରାତି ନ'ଟାବେଳେ ଆରମ୍ଭ ହେଲା । ଆନନ୍ଦରେ ଗାଁ ଲୋକେ ଦେଖୁଛନ୍ତି । ରାମ ସାହୁ ତାଙ୍କ ସ୍ତ୍ରୀ ଓ ଝିଅ ମଧ୍ୟ ଦେଖିବାକୁ ଆସିଥିଲେ । ଝିଅ ରାତିରେ ଚେଇଁ ପାରିଲେ ନାହିଁ । ପ୍ରାୟ ଏଗାରଟା ବେଳକୁ ଶୋଇ ପଡ଼ିଲା । ରାମ ସାହୁଙ୍କ ସ୍ତ୍ରୀ ଝିଅକୁ ନେଇ ଶୁଆଇ ଦେଲେ ପିଣ୍ଡାରେ । ପରେ ନାଚ ସରିଲେ ଘର ଭିତରେ ସମସ୍ତେ ଶୋଇବେ । ବର୍ଷେ ଭିତରେ ଥରେ ମାତ୍ର ଏ ନାଚ ଆସିଛି । ରମେଶବାବୁ କଣ ଆଉ ଥରେ ଆଣିବେ ନା ଗାଁ ଲୋକ ଚାନ୍ଦା ଦେବେ ? ଏତେ ଲୋକ ଦେଖୁଛନ୍ତି ଯେ ଆଜି ଅଧଘଣ୍ଟା ଦେଖିଲେ ହେଲା କଣ ? ସାହୁଆଣୀ ଆସି ତାଙ୍କ ପୂର୍ବ ବସିଥିବା ଜାଗାରେ ବସି ପଡ଼ିଲେ । ପ୍ରାୟ ଦଶମିନଟ ଗଲା ଉତ୍ତାରେ ତାଙ୍କ ବାଡ଼ି ପଟୁ କୁକୁରଟିଏ ଭୁକିଲା । କିଏ ଜଣେ ପିଣ୍ଡା ବାଟେ ଦେଇ ବାଡ଼ି ପଟେ ଚାଲିଗଲା ପରି ଅନୁମାନ ହେଲା । ନାଚ ଭିତରେ କିଏ ଏ କଥା ଲକ୍ଷ କଲେ ନାହିଁ । ନାଚ ସରିଲା ରାତି ଦୁଇଟାରେ । ଯା ଘରକୁ ସେ ଚାଲିଗଲେ ।

ପାହାନ୍ତିଆରୁ ଲେଙ୍ଗୁଟି ଓ ଦୁଇଜଣ ହଳିଆ ବାହାରି ଗଲେ ପାଟଣାପୁରକୁ ପୋଡ଼ହଳ କିଣିବା ପାଇଁ । ଭବାନୀପାଟଣାରୁ ଯିବେ କେସିଙ୍ଗା । କେସିଙ୍ଗାରୁ ଯିବେ ପାଟଣାପୁର ।

ସକାଳ ସାତଟା । ପାଟି ଶୁଭିଲା ରାମସାହୁ ଘରେ । କାନ୍ଦୁଛନ୍ତି

ତାଙ୍କ ସ୍ତ୍ରୀ । ଝିଞ୍ଜ୍ର ଗୋଷ୍ଠ ପିନ୍ଧିଥିଲେ ଗଳାରେ ତିନି ଭରି ଓଜନର ହାର । ସେ ହାର ନାହିଁ । ଗାଁ ଲୋକେ ରୁଣ୍ଡ ହୋଇଗଲେ । କେହି କହୁଛନ୍ତି—"କାଲି ସଞ୍ଜରେ ହାର ଦେଖିଥିଲି ବେକେ ଘାଟରେ ଯେ ବସିଥିଲ ସେ " ବୁଢ଼ାବାବୁ କହିଲେ—"ଯଦି ଟଣ୍ଡି ଛିଡ଼ି ଥିଲ ପଡ଼ି ଯାଇଥିବ । କିଏ ପାଇଥିବ, ଅନୁସନ୍ଧାନ କର ।" ଆଉ ଜଣେ କହିଲା—"ପୋଲିସରେ ରିପୋର୍ଟ ଦିଅ" । ବହୁତ ଖୋଜା ଖୋଜି ହେଲା । ମିଳିଲା ନାହିଁ । ପାଞ୍ଚ ଶହ ଟଙ୍କା ଭିତରେ କେଉଁଠି ପଡ଼ିଗଲା ତାର ପତ୍ତା ନାହିଁ । ଭାଗ୍ୟକୁ ଆଦରି ସମ୍ଭାଳୁ ରହିଲେ ।

ପୋଡ଼ହଳ କିଣି ଲେଙ୍ଗୁଟୁ ଫେରିଲା ପାଞ୍ଚଦିନ ଭିତରେ । ସୁନ୍ଦର ସ୍ୱାସ୍ଥ୍ୟବାନ ହଳକୁ ଦେଖି ଚୌଧୁରାଣୀ ଖୁସି ହେଲେ । କହିଲେ—"ଜାଗ୍ରତ କରି ରଖ, ଗୁହାଳରେ ବାନ୍ଧ ଦାନା ପାଣି ଦିଅ ।" ଗତ ଆଠଟା ବେଳ । ଗୋଦାମ ଘର ପିଣ୍ଡାରେ ବସିଥିଲେ ବୁଢ଼ାବାବୁ । ଲେଙ୍ଗୁଟୁ ଆସି ନମସ୍କାର ଜଣାଇଲା । ବୁଢାବାବୁ ପଚାରିଲେ —"ହେଲା" ?

—"ହଁ, ହୋଇଛି··· ଦୁଇଶହ ଟଙ୍କାରେ ହାରିଟି ବିକି ହେଲା" ଏହା କହି ଲେଙ୍ଗୁଟୁ ବୁଢ଼ାବାବୁଙ୍କ ହାତକୁ ବଢେଇ ଦେଲା ଶହେ ଟଙ୍କା । ବୁଢାବାବୁ ଅଳ୍ପ ହସି କାଠବାକ୍ସ ଖୋଲି ଯତ୍ନରେ ଟଙ୍କା ରଖିଦେଲେ । ଲେଙ୍ଗୁଟୁ ବାହାରି ଗଲା ।

## (୫) ଦୁର୍ନୀତି ଓ ଫଏସଲା

ହଳିଆମାନେ କେତେଥର ନୁକ୍‌ସାନ୍ କଲେ ବୁଢ଼ାବାବୁ ସହ୍ୟ କରି ପାରନ୍ତି ନାହିଁ । ତାଙ୍କ ଦୃଷ୍ଟି ସବୁ ଦିଗକୁ । ସେହି ଦୃଷ୍ଟିକୁ ସାହାଯ୍ୟ କରିବା ପାଇଁ ଲେଙ୍ଗୁଟୁ ସବୁବେଳେ ଆଜ୍ଞାଧୀନ । ପଞ୍ଚାବନ ବର୍ଷ

ହେଲେ ମଧ୍ୟ ତାଙ୍କ ଦୃଷ୍ଟି ଶକ୍ତି ଅତି ତୀକ୍ଷ୍ଣ । ଚଷମା ବ୍ୟବହାର କରନ୍ତି ନାହିଁ । କାଳେ କେଉଁଠି ଭୁଲ୍ କଲ କିମ୍ବା ଅନୁଚିତ କଲ ଚଟ୍କନା ଧରି ପକାନ୍ତି । ଏ ବିଷୟରେ ସେ ସିଦ୍ଧ ହସ୍ତ ।

କୁନ୍ଦ୍ରୁ ଲଣ୍ଡାର ଇଙ୍ଗିତରେ ହଳିଆମାନେ ଖଟଣେ ଧାନ ନଡ଼ାଗଦା ଭିତରେ ଲୁଚାଇ ରଖିଥିଲେ । ବୁଢ଼ାବାବୁଙ୍କ ଦୃଷ୍ଟି ଏସ୍ଥାନ ସେ ସ୍ଥାନ ବୁଲି ବୁଲି ଲେଙ୍ଗୁଡ଼ି ଓ ସେ ନିଜେ ଏହାକୁ ଆବିଷ୍କାର କଲେ । କଥାଟା ନିର୍ମଳ ହୋଇଗଲା । ହଳିଆମାନେ କି ପ୍ରକାର ଦୁର୍ନୀତି ଚଳେଇଛନ୍ତି ସେ ସହଜରେ ଜାଣି ପାରିଲେ । ଠିକ୍ କରି- ନେଲେ ଏକଥା ରମେଶ ବେହେରାଙ୍କ କୃତି ନୋହିଲେ ହଳିଆମାନଙ୍କ ସାହସ କାହିଁ ? ସାଙ୍ଗେ ସାଙ୍ଗେ ଅନୁସନ୍ଧାନ କରି କୁନ୍ଦ୍ରୁ ରଣାକୁ କାର୍ଯ୍ୟରୁ ଅନ୍ତର କରିବା ପାଇଁ ଗୌନ୍ତିଆଣୀମାଙ୍କୁ କହିଲେ । ଗୌନ୍ତିଆଣୀ ମଧ୍ୟ ଏ କଥାରେ ଅନୁମୋଦନ କଲେ ।

କୁନ୍ଦ୍ରୁ ରଣା ପାଇଁ ସୁପାରିଶ କଲ ରମେଶ ବେହେରା ପାଖରେ । ରମେଶ ଦାଦା ଗାଁର ଜଣେ ମୁଖିଆ ଲୋକ । ସେ ଚାହିଁଛନ୍ତି ଗଛପଣ, ହାଡ଼ ବାଡ଼ । ଖାଣ୍ଟି ଚାଷୀ ଜଣେ । ତାଙ୍କ ବୁଦ୍ଧିରେ ସେ ମଣିଷକୁ ମଧ୍ୟ ଭଲ ଭାବରେ ଚିହ୍ନି ପାରନ୍ତି । ଗାଁ ଲୋକଙ୍କୁ ସହାନୁଭୂତି ଦେଖାନ୍ତି । କୁନ୍ଦ୍ରୁକୁ ସାଙ୍ଗରେ ଧରି ରମେଶ ବାବୁ ଆସିଲେ ବୁଢ଼ାବାବୁଙ୍କ ପାଖକୁ । ଗରିବ ହଳିଆର ଦୋଷ ଏଥରକ ମାଫ୍ କରି କାର୍ଯ୍ୟରେ ପୁନର୍ବାର ମୁକରର୍ କରିବାକୁ ଗୌନ୍ତିଆଣୀମାଙ୍କୁ ଅନୁରୋଧ କଲେ । ଦଣ୍ଡ ସ୍ୱରୂପ ମାସିକ ବେତନ ଧାନରୁ କିଛି କାଟି ନେବାକୁ ବାରମ୍ବାର କହିଲେ । ବୁଢ଼ାବାବୁ ସବୁ ଶୁଣିଲେ । ହାତ ହଲେଇ, ନିଶ ଝୁଲେଇଁ କହିଲେ—"ଏତେବେଳକୁ ରମେଶ ବାବୁ, ରମେଶ ବାବୁ ରଖୁ ନାହାନ୍ତି ?" ହଳିଆମାନଙ୍କର

ଦୁର୍ନୀତି ବିଷୟରେ ବୁଢ଼ାବାବୁ ଗୌନ୍ୟାଣୀ ଓ ରମେଶଙ୍କୁ ବୁଝାଇ ଦେଲେ । ପ୍ରକାରାନ୍ତରେ ସୂଚନା ମଧ୍ୟ ଦେଲେ "ରମେଶ ଗାଁ ଭିତରେ ସେମାନଙ୍କ ପକ୍ଷ ଗ୍ରହଣ କରି ଦୁର୍ନୀତିକୁ ପ୍ରଶ୍ରୟ ଦେଉଛନ୍ତି । ଏଥିରୁ ଅନ୍ତତଃ ସେ ପୁଣି ଯାଇ ନିଜ ବ୍ୟବସାୟ ଦେଖିବା ଉଚିତ । ଅନ୍ୟଥା ଅଧିକାରରେ ବାଧା ଦେବା ସମ୍ଭାବନା ନଷ୍ଟ ହୁଏ ।

କୁନ୍ଦୁରୁ ରଣା ବଡ଼ ଭାବନା । ନୂଆ ମହାଜନ ବର୍ଷ ଶେଷରେ ପାଇବା ସମ୍ଭବ ନୁହେଁ । ତାଙ୍କୁତ ମିନତି କରି ଗୌନ୍ୟାଣୀ ଗୋଡ଼ ତଳେ ପଡ଼ିଲା । ଗୌନ୍ୟାଣୀ ମନ ବଦଳାଇଲେ ନାହିଁ । ତାଙ୍କ ଧରମ ବାପା ଯାହା କହୁଛନ୍ତି ଠିକ୍ । ଦୁର୍ନୀତିଗ୍ରସ୍ତ ଲୋକଙ୍କୁ ରଖିବେ ନାହିଁ । କୁନ୍ଦୁରୁ ରଣା! ଅତି ଦୁଃଖିତ ମନରେ ସେଠୁ ଫେରିଲେ । ରମେଶ ମଧ୍ୟ ନିଜ କାମରେ ବାହାରି ଗଲେ ।

ଗାଁ ଲୋକେ ଫୁସୁରୁଫାସୁରୁ ହେବାକୁ ଲାଗିଲେ—"ଦେଖ ବୁଢ଼ାବାବୁର କୌଶଳରେ କୁନ୍ଦୁରୁ ରଣାର ଚାକିରି ଗଲା । କୁନ୍ଦୁରୁ ବୁଢ଼ାବାବୁଙ୍କର କଥା ଶୁଣିଲା ନାହିଁ ବୋଲି ଆଜି ତାର ଏ ଦଶା । ଏଇ ଘରକୁ ଆସି ବୁଢ଼ା କେମିତି ମାଲିକ ସାଜୁଛି ଓ ଗରିବର ଦାନା ମାରୁଛି । ହେଉ, ହେଉ ଧରମ ଅଛି । ଧର୍ମହିଁ ଏ ଘରେ ଚୋର ଥିଲେ ଦିନେ ନିଶ୍ଚୟ ଦେଖାଇ ଦେବ ସତ-ସତ ଆଉ ମିଛ-ମିଛ ।"

(୬) ପ୍ରତିକ୍ରିୟା

ଗାଁ କଚ୍ଛମଣ୍ଡପରରେ ଏପରି ଦୁଇଟି ଘଟଣା ଘଟିଯିବାରୁ ଲୋକଙ୍କ ମଧ୍ୟରେ ଆତଙ୍କ ସୃଷ୍ଟିହେଲା । ଗାଁ ଲୋକେ ରମେଶ ବେହେରଙ୍କ ପାଖକୁ ଗଲେ । ରମେଶବାବୁ କେତେଜଣ ମୁଖିଆ

ନେଇକରି ସବୁ ଚୌଧୁରାଣୀ ମାଙ୍କ ପାଖକୁ ଆସିଲେ । ବୁଢାବାବୁ ଚୌଧୁରାଣୀ ମା ଓ ଆଉ ସମସ୍ତେ ପିଣ୍ଡାରେ ବସିଲେ ଓ ଗାଁ ଖବର ଆଲୋଚନା କଲେ । ଶେଷରେ ରମେଶବାବୁ କହିଲେ —"ଏ ଗାଁରେ କେବେହେଲେ ଏପରି ସମସ୍ୟା ଦେଖା ଯାଇ ନ ଥିଲା । ପୂର୍ବେ ସମସ୍ତେ ମିଶି ଗାଁରେ ଭଲ ମନ୍ଦ ବୁଝୁଥିଲେ । ଏବେ ନିଜସ୍ୱାର୍ଥକୁ ଆଗରେ ରଖି ଅନ୍ୟମାନଙ୍କ କଥା, ଗାଁର କଥା ଭୁଲିଗଲେଣି । ମଣ୍ଡଳରେ ଗୁଣ୍ଡା ସଂଖ୍ୟା ବଢୁଛି । ଆମ୍ଭମାନଙ୍କୁ ସତର୍କ ହେବାକୁ ହେବ" । ସମସ୍ତେ ଏ କଥାରେ ରାଜିହେଲେ । ବୁଢାବାବୁ କହିଲେ —" ସତର୍କ ହୋଇ ରହିଲେ ମଧ୍ୟ ଦେଖୁଛନ୍ତି ନୂଆ ଆପୋଡ଼ଜିଲା କାଏ ଆସି ଲାଗିଗଲା । ଏଡ଼ିକି ବଦମାସ୍ ଲୋକ ଅଛନ୍ତି । ଚୋର ଧରା ନ ପଡ଼ିଲେ କଣ କରିବେ, ଆପଣ ମାନେ ଭାବନ୍ତୁ । ଯାହାର ସମ୍ପତ୍ତି ନଷ୍ଟ ହେଲା ତାହା ଭରିବ?"

ଚୌଧୁରାଣୀମା କହିଲେ —"ଯାହା ହେବାର ହୋଇ ସାରିଛି ଏବେ ସେଇ କଥାକୁ ଭାବିଲେ କଣ ହେବ? ମୁଁ ଶୁଣୁଛି କେତେ ଗାଁରେ ଧାନ ଚୋରି ଆରମ୍ଭ ହୋଇ ଯାଇଛି । ଧାନ ଚାଷୀ ମାନଙ୍କୁ ଜଗି ରହି ଧାନ ଚଞ୍ଚଳ କାଟି ନେଇ ଆସିବା ଉଚିତ" । ଏହାପରେ ଆଲୋଚନା ଶେଷହେଲା ଓ ସମସ୍ତେ ନିଜ ନିଜ ଘରକୁ ଚାଲି ଗଲେ ।

## (୭) ଗୁପ୍ତ ମନ୍ତ୍ରଣା

ଏ ଯୁଗକୁ କେହି କେହି ଦେଖନ୍ତି ଠାକୁଠର ଯୁଗରୂପେ । ବୁଦ୍ଧି ଥିଲେ ସେହି ବାଟରେ ନିଜକୁ ସଜାଇ, ସମ୍ପର୍କ ଲଗାଇ ସୁବିଧା ପାଇଲେ ଦୁଇ ପଇସା ରୋଜଗାର କରିବା କେତେ

ଲୋକଙ୍କର ଏକ ପ୍ରକାର ମତ ହୋଇ ଚଲିଣି । ବୁଢ଼ାବାବୁ ଏ ମତକୁ ଭିନ୍ନ ପ୍ରମାଦ କରନ୍ତି । ଆଜି ଅଳ୍ପ ବୁଦ୍ଧି ଦର୍ପ କରେ ଲୋକଙ୍କଠୁ ମନ୍ତ୍ରୀ ହାତ ମିଳେଇ କାନ୍ତି ଗୋଟାଏ ବଡ଼ ରୋଜଗାର କରି ଫେରିଯିବେ ନିଜ ଘରକୁ । ଏହି ଅଭିଳାଷରେ ଅନେକ । କେତେବେଳେ ତିନିହଜାର ଉପର ପଇସା ସଞ୍ଚୟ କରି ପାରିଲେ ଆସନ୍ତା ବର୍ଷ ଲୋକଙ୍କଠାରୁ ବନ୍ଧକ ଜମି ନିଜ ନାଁରେ ଲେଖେଇ ନେଇ ଧରମ ଝିଅ ଘରେ ସ୍ଥାୟୀ ବାସିନ୍ଦା ହୋଇ ରହିବେ ।

ଅପରାଧୀ ଅପରାଧର ପଶ୍ଚାତରେ ଦୌଡ଼ିବା ପୂର୍ବରୁ ତା'ର ମନରେ ଜାଗିଉଠେ ଏକ ପ୍ରବୃତ୍ତି — ଏକ ବହ୍ନି । ଏହି ବହ୍ନିର ଜ୍ୱଳନରେ ସାଧୁବୃତ୍ତି ସକଳ ଜଳିପୋଡ଼ି ଯାଆନ୍ତି — ଗୁପ୍ତ ହୋଇ ଯାଆନ୍ତି । ମାନସ ପଟରେ ଭାସି ଉଠନ୍ତି ଅଭାବ, ଅଭିଳାଷ, ପ୍ରଲୋଭନ ଓ ମନ୍ଦ ଉଦ୍ଦେଶ୍ୟ । ଅପରାଧୀ ଉଦ୍ଦେଶ୍ୟ ସାଧନ ନିମିତ୍ତ ଗୋଟିଏ ପ୍ରଣାଳୀର ଅନୁସନ୍ଧାନ କରେ ଓ ତାହାର ପ୍ରସ୍ତୁତକରଣ ପାଇଁ ଉଦ୍ୟୋଗ କରେ । ଏହି ଚେଷ୍ଟା ଗୋଟିଏ ପ୍ରବୃତ୍ତି ମଧ୍ୟ ଦେଇ ଗତିକରେ ଏବଂ ଉଦ୍ଭାବିତ କୌଶଳକୁ ଅବଲମ୍ବନ କରି ଉତ୍ତପ୍ତ ଅଭିଳାଷର ପୂରଣ ପାଇଁ ପୂର୍ବ ଜଳୁଥିବା ବହ୍ନିରେ ଇନ୍ଧନ-ପ୍ରଦାନ କରେ । ତା'ର ଚେଷ୍ଟା ଓ ଉଦ୍ଭାବିତ କୌଶଳ ଅଭିଳାଷର ପୂର୍ତ୍ତିତା ଆଣିଦେଇ ପାରେ ଅବା ଆଣି ଦେଇ ନ ପାରେ । ଅପରାଧୀର ଅପରାଧ ବାସ୍ତବତା ରୂପ ଧରିପାରେ କିମ୍ବା ସେହି ଚିନ୍ତିତ ଦୁଃସାହସିକ କାର୍ଯ୍ୟରେ ଅପରାଧୀ ଅକୃତକାର୍ଯ୍ୟ ହୋଇ ପାରେ । କିନ୍ତୁ ତା'ର ପ୍ରତ୍ୟେକ ଉଦ୍‌ଯୋଗ ଗୋଟିଏ ଗୋଟିଏ ଆତଙ୍କ ସୃଷ୍ଟି କରେ ଓ ସମାଜର ନରନାରୀଙ୍କୁ ଆଘାତ ଦେଇଥାଏ ।

ରାତିରେ ବୁଢ଼ାବାବୁ ଖାଇସାରି ଖଟରେ ବସିଛନ୍ତି । ପାଖରେ

ଲେଙ୍ଗୁଟ ଅଛି। ପାଖକୁ ଡାକି ପଚାରିଲେ—"ତୋ ଝିଅ ବାହା ପାଇଁ ପଇସା ଠିକ୍ କଲୁ ଲେଙ୍ଗୁଟେ ?"

—"ଆଜ୍ଞା, କୁଆଡୁ ପାଇବ। ଆପଣଙ୍କୁ ଆଶ୍ରା କରିଛି। ବଡ଼ ଗଛ ଛୁଇଁ ବଡ଼ ପଶନ୍ତ ଆଶ୍ରା କରିଥିଲେ ବଞ୍ଚିଯିବ।"

—"ତୋର ବନ୍ଧକ ଜମି ମୁକୁଳେଇଲୁ କି ?

—"ଅଜ୍ଞା, ନାହିଁ। ତିନିହଜାର ଟଙ୍କା ଠିକ୍ ନକଲେ ଉମେଶ ଫେରବାର ଭେବ କୁଆଡେ ? ସାକ୍ଷୀମାନେ ଅଛନ୍ତି। ମକଦ୍ଦମାରେ ସେ ଜିଣିଯିବ। ପାଞ୍ଚ ହଜାର ପାଇଲେ ବନ୍ଧପୁ କରିଦେବ।"

—"ହେଉ ଗୋଟିଏ କାମ ପାରିବୁ ?

—"କହନ୍ତୁ ?"

—"ତୋର ମଧ୍ୟ ସୁବିଧା ହେବ ଆଉ ମୋର ମଧ୍ୟ"।

—"ଯଦି ସୁବିଧାରେ ଗୌମ୍ୟାଣୀଙ୍କ ହାତବାକ୍ସଟା

....ଏଁ ଲେଙ୍ଗୁଟେ।

ଲେଙ୍ଗୁଟେ ଜିଭ କାମୁଡ଼ି ପକାଇ କହିଲା—"ଆଜ୍ଞା, ସେ କଥା ସମ୍ଭବ ହେବ ନାହିଁ। ମୋର ସୁବିଧା ଅସୁବିଧାରେ ଚଳେଇ ନେଉଛନ୍ତି"।

—"ଆରେ, ହେବ, କାହିଁକି ହେବ ନାହିଁ ଲେଙ୍ଗୁଟେ ? ତୁ ଆଉ କେତେ ଦିନ ଏମିତି ଗରିବ ହୋଇ ଚଳିବୁ ? ସରକାରୀ ପଇସା ପରିଶୋଧ ନ କଲେ ପରା ସରକାର ବାନ୍ଧି ନିଏ। ସେତେବେଳକୁ କଣ କରିବୁ ? ଝିଅ ଯଦି ବାହାସଙ୍ଗେ ପଳେଇ ଯାଏ

ତୋ ଉନ୍ନତରେ କେତେ ବାଧା ଆସିବ । ତୁ ତ ଶୁଣିଛୁ ସ୍ଥାନେ ସ୍ଥାନେ ଗାଁ ମାନଙ୍କରେ ଧାନ ଗୋଲା ହୋଇଛି, ମୁଁ ସେଠୁ ଜବରର ଭଡ଼ା ଆଣି ଦୁଇଟି ଗୋଲା କରିବି । ଧାନ ଯେମିତି ଚଞ୍ଚଳ ମଣ୍ଡାଣି ହୋଇ ଯିବ । ଘର ପାଖ ଖଳାରେ ଧରମଟିଆକୁ ରଖାଇ ଦେବି । ମୁଁ ଅନ୍ୟ ଖଳାରେ ରହିବି । ଗଞ୍ଜରେ ସୁବିଧା ଦେଖି ଗୋଡାଇର ଗାଈ ଦେବୁ । ମୁଁ ଜାଣି ପାରିବ ନାହିଁ । ବାହାରେ ସୁବିଧା ଦେଖି ଜାଗା ହାସଲ୍ କରିବୁ" ।

—"ହଁ ଚେଷ୍ଟା କରିବି...... କେତେ ମୋତେ ସେ ଧନ ଲୁଟି ମିଳିବ ତ ?

—"ଆରେ ମୁଁ ଲୁଟି କରାଇ ଦେବି... ତୁ ଘରେ ରହି କୌଶଳ ଚିନ୍ତା କରିବୁ...... ବୁଝିଲୁ ? ତୁ ତୋର ବହୁ ଘରକୁ ଯିବା ପାଇଁ ଗୌରାଣୀ ମଙ୍କୁ ଲୁଟି ପାଇଁ ରଖିବୁ ।"

—"ହଁ" କହି ଲେଙ୍ଗୁଟ୍ଟା ତାହାର ଚତୁରତା ବଢ଼ାଇ । ମାଟିକୁ ଅନାଇ ଜଣ ଗୁଡାଏ ଭାବିଲା ।

ବୁଢ଼ାବାବୁ କହିଲେ—"ତୁ ଟଙ୍କା ପଇସା ରଖି ନେବୁ । ତୋ ଅସୁବିଧା ମେଣ୍ଟାଇବୁ । ମୋତେ କେବଳ ସୁନାରୁ କିଛି ଭାଗ ଦେବୁ ।"

ଲେଙ୍ଗୁଟ୍ଟୁ ଓ ବୁଢ଼ାବାବୁ ଦୁହେଁ ଦାନ୍ତିଙ୍କି ଅନାଇଲେ । ଅଳ୍ପ ହସିଲେ, ଅଳ୍ପ ଚମକିତ ହେଲେ । ତା ପରେ ଦୁହେଁ ମୁହଁ ଓ ମୁଣ୍ଡ ହଲାଇ କଥାବାର୍ତ୍ତା କଲେ ଲେଙ୍ଗୁଟ୍ଟୁ ତା ଘରକୁ ଚାଲିଗଲା । ବୁଢ଼ାବାବୁ ଶୋଇବାକୁ ଗଲେ ।

(୮ ଧାନ ଗଣ୍ଡାଣି

ସେ ଦିନ ଅମାବାସି । ପ୍ରଥମ ଭରଣ ଧାନ କଟାଯାଉଛି । ନୂଆ ନିର ଶିଙ୍ଗଳା ଚଳାଇବାକୁ ହେବ । କୃଷକମାନଙ୍କ ଦୁର୍ଗତିକୁ ସ୍ମରଣ କରି ଓ ନିଜ ଦୁର୍ବଳତା ଦୂର କରିବା ପାଇଁ ବୁଢାବାବୁ ଦୂର ସ୍ଥାନରେ ଛିଡା ହୋଇ ଦେଖୁଥିଲେ । ସେଠାରୁ ଏକ ମାଇଲ ଦୂରରେ ଗୋଟିଏ ଛୋଟ ଘରେ ଶିଙ୍ଗଳା ଥିବା ସଫା ସୁରୁଖୁରୁ ଦେଖାଗଲା । ତିନି ଭରଣ ଧାନ ଏଠି ଜମା ରହିଲେ । ଆଜି ଶିଙ୍ଗଳା ହୋଇ ଯିବ ଧାନ ପାଖ ବାଡି ଘରେ । ତହିଁରେ ତୋଡିଏ ଭରଣ ଧାନ ଭଡାଇଲେ । ଶିଙ୍ଗଳା ପଡିଲା ଦୁଇ କୋଣରେ । ଧାନମଣ୍ଡିଆକୁ ବୁଝାଇ କହି ଦେଲେ ଚଞ୍ଚଳ ଧାନ ମଡାଇ ଆଣି ଗୋଦାମ ଘରେ ସାଇତି ରଖି ଦେବାକୁ ହେବ । ସେଇ ପାଖ ଖଳାରେ ଚୌଧୁରାଣୀ ନିଜେ କୃଷକମାନଙ୍କ କାର୍ଯ୍ୟ ବୁଝିବେ । ଚୌଧୁରୀ ବୁଢାବାବୁ ଦୂରରେ ରହିବେ ଘରର ଦଣ୍ଡାରେ । ଘରର ଜଣ କୃଷକଙ୍କୁ ଭାର ଦେଇଥିଲେ । କେଉଁଠି ସେଦିନ ଛୁଟି ପାଇଲେ କୌଣସି କୃଷକ କାମ ପାଇଁ । ବୁଢାବାବୁଙ୍କ ପାଖରେ ଆଠଜଣ ଓ ଚୌଧୁରାଣୀଙ୍କ ପାଖରେ ନଅଜଣ ରହିଲେ । ଖଣ୍ଡିଏ ଟ୍ରାକଟର ଭଡା ଆଣି ଗୁହରେ କାମ ଆରମ୍ଭ କରି ଦିଆଗଲା । ଘର ପାଖ ଟୋଲି ବଡ଼ି ଥିଲା । ଟ୍ରାକଟରର କୌଣସି ଅସୁବିଧା ହେଲା ନାହିଁ ।

ରାତି ଆଠଟା ନ ହୋଇଣୁ ଗାଁରେ ସମସ୍ତେ ଶୋଇ ପଡନ୍ତି କେବଳ ଖଳାମାନଙ୍କରେ କାମ ଲାଗିଥାଏ । ପ୍ରାୟ ମଧ୍ୟ ରାତ୍ରି ବେଳକୁ ଗୋଟାଏ ହେଉଭ ରବ ଶୁଣାଗଲା— "ଯିବୁ ଯିବୁ ହବୁ ଥିବୁ" । ଏ ରବ ଚୌଧୁରାଣୀଙ୍କ କୋଠାର ଛାତ ଉପରୁ କମ୍ବା ବାରଣ୍ଡା ପାଖରୁ ଆସିଲା ବୋଲି ଅନୁମାନ ହେଲା । କୃଷକମାନେ କହୁଥାନ୍ତି କଣ

ଗୋଟାଏ ଅଶୁଭ ଘଟିବ । ଗୌରୀମଣି କହୁ ଏଣ ଖୁସି । ଏଥର ଟ୍ରାଙ୍କରେ ଅଗ୍ନିଡୁ ପ୍ରଥମ କଣ ଡ୍ରାଇଭର ଟାଙ୍କରେ ଚଲାଇ ଥାନ୍ତି । ଗୋଟାଏ ପେଟ୍ରୋମକ୍ସ ଆଲୁଅ ଜଳୁଥାଏ । ଗୌରୀମଣି କେତେ ପାଗଳ ସ୍ୱପ୍ନ ଦେଖୁଥାନ୍ତି । ପେଗୁ ଲକ୍ଷ୍ମୀଙ୍କ ବାହନ । ଏ ବର୍ଷ ବହୁତ ଫସଲ ହୋଇଛି ଧରମଜାପ ଆମିଲ ହନୁ ଧାନ ଦୁଇଗୁଣ ବଢ଼ି ଯାଇଛି । ଧାନ ମଡ଼ାଣି ବେଳକୁ ପେଚକର ରାବ ଅତି ଶୁଭ । ଏପରି ଭାବୁ ଭାବୁ ତାଙ୍କର ନିଦ ହୋଇଗଲା । ନିଦରେ ଦେଖିଲେ ତାଙ୍କ ପୁଅ ମାମୁଁ ଘରେ ବହୁତ ଆନନ୍ଦରେ ପାଠ ପଢ଼ୁଛି । ମାମୁଁ ମାଈଁ ଯାହା ଖାଦ୍ୟ ରାନ୍ଧୁଛନ୍ତି ପୁଅ ହରେକୃଷ୍ଣ ପାଇଁ ସବୁ ଗାଁରୁ ଭୁରନ୍ତ ପଠାଉଛନ୍ତି ।

ସେଗୁ ଥରେ ଦୁଇଥର ରାବ ଦେଇ ବହୁ ଦୂରକୁ ଉଡ଼ିଗଲା । ବୁଢ଼ାବାବୁଙ୍କ ଖଳା ନିକଟରେ ଶୁଭାଗଲା“--ଯିବୁ ଯିବୁ ଥିବୁ ଥିବୁ” । ବୁଢ଼ାବାବୁ ଶୁଣିଲେ । ମନେ ମନେ ଭାରି ଖୁସି । ରାତି ସାରା କାମ-କରି, ତାଙ୍କର ନିଦ ନ ଥିଲା; ସକାଳୁ ଟିକିଏ ଘୁମେଇ ପଡ଼ିଲେ ।

## (୯) ପେଚୁର ରିପୋର୍ଟ

ସକାଳ ହେଲା । କାଉ କାଉଁଳା । ସୂର୍ଯ୍ୟ ଉଦୟ ହେଲେ । ପ୍ରାତଃକୃତ୍ୟ ଓ ସ୍ନାନସାରି ଗୌରୀମଣି ଲୁଗା ପିନ୍ଧାଇ ନିଜ ବୋଟଘରକୁ ଗଲେ । ଯାହା ଦେଖିଲେ ସେଥିରେ ତାଙ୍କ ତାଳୁକା ଶୁଖିଗଲା । ଗୋଟିଏ ଝରକା ଭଙ୍ଗା ହୋଇଛି । ତାଙ୍କ ହାତ ବାକ୍ସ ନାହିଁ । ସୁନା କୋଡ଼ିଏ ଭରି ଓ ଦୁଇ ହଜାର ଟଙ୍କା ଥିଲା ସେହି ବାକ୍ସରେ । ବୋବାଳି ଘୁଡ଼ି କାନ୍ଦିଲେ । କାନ୍ଦ କାନ୍ଦ ଆଉ କଣ ଗଲା ବୋଲି

ଦେଖି ବସିଲେ । ବନ୍ଦ ବାକ୍ସରେ ଥିବା ମଠା, ପାଟ, ଶାଢ଼ୀ, ପୁରୁଣା ପୋଷାକ ପତ୍ର ନାହିଁ । ବାକ୍ସର ତାଲା ଘଙ୍ଗି ଖଣ୍ଡେ ଦୂରେ ପଡ଼ିଛି । ଗତ ରାତିରେ କେହି ଜଣେ ଝୁଙ୍କା ଘଙ୍ଗି ଘରେ ପଶି ଏପରି ସର୍ବନାଶ କରିଛି । ଚୌଧୁରାଣୀଙ୍କ କାନ୍ଦଣା ଶୁଣି ସାଙ୍ଗେ ସାଙ୍ଗେ ହଳିଆ, ନଉଆ, ନଉଆଣୀ, ଗାଁ ଲୋକେ ଦୌଡ଼ି ଆସିଲେ । କଥାଟା ପ୍ରଘଟ ହୋଇଗଲା । ବୁଢ଼ାବାବୁଙ୍କୁ ଖବର ଦିଆଗଲା —"ଚୌଧୁରାଣୀଙ୍କ ଘରେ ଚୋରି" । ବୁଢାବାବୁ ଲସର ପସର ହୋଇ ଦୌଡ଼ିଲେ । ଝିଅର କାନ୍ଦଣା ସହ୍ୟ କରି ପାରିଲେ ନାହିଁ । ନିଜେ ମଧ୍ୟ ବସି କାନ୍ଦିବାକୁ ଲଗିଲେ । ଘର ଆଡେ଼ ଖୋଜା ଖୋଜି ଲଗିଲେ ।

ଗାଁ ଲୋକେ କହା ହେବାକୁ ଲାଗିଲେ—"କେବେ ତ ଏ ଗାଁରେ ଚୋରି ହୋଇ ନ ଥିଲା । ଏ ଆପଦ ମାଡ଼ି ଆସିଲା ବୁଢ଼ାବାବୁ ଏଠି ରହିବାରୁ । କେବେ ଶୁଣା ନ ଥିଲା—ହଳିଆମାନଙ୍କର ଦରମା କାଟି, ବୃକଶରୁ ବରଖାସ୍ତ । ବୃଢାବାବୁ ନିଜଗାଁରେ ନ ରହି ପର ଘରକୁ ଆସି କଣ ଦେଖୁଛନ୍ତି ? କଣ ବୁଝୁଛନ୍ତି ?" ଏ କଥା କାନରେ ବାଜିଲେ ବୁଢ଼ାବାବୁଙ୍କର ପ୍ରାଣ କଣ୍ଠ ହୋଇଯାଏ । ସେ କେମିତି ନିଜ ଘରକୁ ଫେରିଯିବେ ତାହାରି ଯୋଜନା କରିବାକୁ ଲଗିଲେ । ରମେଶ ବେହେରଙ୍କୁ ଅନୁରୋଧ କରି ଡ଼ାକିଆଇ ପଠାଇଲେ । କଣ କଥାବାର୍ତ୍ତା ହୋଇ ପୋଲିସ ଷ୍ଟେସନକୁ ଗଲେ । ଥାନାବାବୁ ଗୋଟି ଗୋଟି ସବୁକଥା କହିଲେ । ଥାନାବାବୁ ଜଣେ ପୁରୁଣା ଲୋକ । ସବୁ ଶୁଣିଲେ ଓ ବୁଢାବାବୁଙ୍କୁ କହିଲେ—"ଚୋର ଧରା ନ ପଡିଲା ପର୍ଯ୍ୟନ୍ତ ଆପଣ ନିଜଗାଁକୁ ଯାଇ ପାରିବେ ନାହିଁ" । ପାଇକ ବୁଢାର ଅବସ୍ଥା କାହିଁରେ କଣ ହୋଇ ଯାଉଥାଏ । ପେଟ କେତେଥର ମୋଡ଼ି ହେଲଣି । ପୋଖରୀ ଆଡ଼କୁ ଦୌଡ଼ିଥାନ୍ତି । ଥାନାବାବୁ ନିଜେ

ଗାଁକୁ ଆସି ଘଟଣାଟିର ପ୍ରାଥମିକ ଅନୁସନ୍ଧାନ କରି ଚାଲିଗଲେ ।

## (୧୦) ଶେଷ ଚମତ୍କାରି

ଆଜି ବୁଢାବାବୁ ହରଚନ୍ଦ୍ରର ନିଜ ଘରକୁ ଚାଲି ଯିବା ପାଇଁ ଧରମଗଡ଼ିଆଠୁଁ ମେଲଣି ମାଗି କାଳିଆକୁ ଘର ଦେଇ ଆଗକୁ ଚାଲି ଦେଇ ଅଛନ୍ତି । ନାଭଟିନ୍ ଓ ମେଲଙ୍ଗଟ୍ ମଧ୍ୟ ତାଙ୍କର ଧୀରେ ଧୀରେ ଆସୁଥାନ୍ତି । ଆଗକୁ ଯିବେ କି ପଛକୁ ଯିବେ କିଛି ଠିକ୍ କରି ପାରୁ ନ ଥିଲେ । ଗାଁ ଲୋକେ ନିଶ୍ୱାସ ନେଇ କହିବାକୁ ଲାଗିଲେ —"ଭଲ ହେଲା ଯାନ୍ତୁ, ଘାଉଟିଏ ଗଲା" । କାଳିଆ ଛକ ଚାହିଁ ବୁଢାବାବୁଙ୍କୁ ଦେଖି ଦେଉଛି, ବୁଢାବାବୁ ଦୂରରୁ ଅନୁମାନ କରି ନେଲେ, ଆଖିରେ ମଧ୍ୟ ସଞ୍ଜ ବାଜୁଛି । ରମେଶ ଓ କାଳିଆ ଠିଆ ହୋଇ କଥାବାର୍ତ୍ତା କରୁଛନ୍ତି । ମନେ ମନେ ଭାବିଲେ ସେମାନେ ନିଶ୍ଚୟ ଚୋର ଘଟଣା ଆଲୋଚନା କରୁଥିବେ । ଏମାନେ ଯେତେ ଚେଷ୍ଟା କରି ପାଇଥାନ୍ତୁ ମେଲଙ୍ଗଟ୍ ଆଉ ତାଙ୍କ କୌଶଳ ଭେଦରେ ସେ ଧରାପଡ଼ିଯିବେ । ତାଙ୍କୁ ଧରିବା ସହଜ ନୁହେଁ ।

ବୁଢାବାବୁ ଘର ଭଡ଼ା ରମେଶ ଓ କାଳିଆ ପାଖରେ ପହଞ୍ଚିଲେ । ରମେଶ ହେଡ଼େ ଟିକିଏ ହସି ଦେଇ କହିଲେ— "ନମସ୍କାର ବୁଢାବାବୁ ! କଣ ଘରକୁ ବାହାରିଲେ ?"

—"ହଁ, ହଁ ଚାଲ କାଳିଆ ଚଞ୍ଚଳ ଯିବା । ବହୁ ସମୟ ଚାଲି ଯାଉଛି ।"

—"ହଉ ବାବୁ"— କାଳିଆ ଘର ଧରି ଆଗକୁ ଚାଲିଲା । ରମେଶ ବାବୁ ଉତ୍ତର ନ ପାଇବାରୁ ପାଖ ଥରେ ଦ୍ରୁଣ୍ଣ କଲେ

—"ଯାହାବାବୁ କହୁଥିଲେ ଷ୍ଟେସନର ଖବର ମିଳିଲାଣି କଥା କଣ ହଉଛି ?

—"ଯାହା ହେଉ ରମେଶ ଭଗବାନ୍ ମଙ୍ଗଳ କଲେ । ଏ ନାତି ପୁଅକୁ ନେଇ ଘରେ ଛାଡ଼ି ଦେଇ ଆଜି ସାଙ୍ଗେ ସାଙ୍ଗେ ଫେରି ଆସିବି । ଆସିଲେ କଥାବାର୍ତ୍ତା ହେବ ।"

—"ହେଉ ଯାନ୍ତୁ । ବସ୍ତ ବୋଧହୁଏ ଏଠିକି ଆସିଲାଣି । ଏଥରି ଘର ମୁହାଁ; ନମସ୍କାର, ମୁଁ ଗଲି"--ରମେଶ ଲେଙ୍ଗ୍‌ଟୁର ମୁହଁକୁ ଅଳ୍ପ ଅନାଇ ଚାହାଁଣ ଗଲା । ଲେଙ୍ଗ୍‌ଟୁର ମୁହଁର ହସ କେଜାଣେ ନେଇ ଯାଉଛି । ଆତଙ୍କର କେତୋଟି ଦାଗ କପାଳ ଓ ଆଖିକୁ ଛୁଇଁ ଆସୁଛି । ସେ ଅନ୍ୟମନସ୍କ ପରି ଜଣା ଯାଉଛି । ରମେଶ ଢୁଳା-ଯିବାରୁ ବୁଢାବାବୁ ମନେ ମନେ ଭାବିଲେ ଗ୍ରହଟେ ଟୁଳିଗଲା । ଲେଙ୍ଗ୍‌ଟୁକୁ ପଚାରିଲେ—"ବନ୍ଦୋବସ୍ତ ଠିକ୍ ଅଛି ତ ?"

ଭୀତତ୍ରସ୍ତ କଣ୍ଠରେ ଲେଙ୍ଗଟୁ ଉତ୍ତର ଦେଲା—"ଆଜ୍ଞା, ହଁ । କିଛି ଅସୁବିଧା ନାହିଁ । ଝୁଆର, ମୁଁ ଯାଉଛି" । ଲେଙ୍ଗ୍‌ଟୁ ଚାଲିଗଲା ।

କାଳିଆ, ବୁଢ଼ାବାବୁ ଓ ନାତିପୁଅ ହରେକୃଷ୍ଣ ଆଗକୁ ଚାଲିଲେ । ଦେଖୁ ଦେଖୁ ଗୋଟିଏ ବସ୍ ଆସିଲା । କାଳିଆ ହାତ ଉଠାଇ ବସ୍‌କୁ ଅଟକାଇଲା । ବସ୍ତା କଡ଼ ଯାତ୍ରୀ ବୋଲି ସେ ଦିନ କଣ୍ଡକ୍ଟରବାବୁ ଦୟା ପରବଶ ହୋଇ ଟିକେଟ ଦୁଇଖଣ୍ଡ ଦେଲେ । ଖଣ୍ଡେ ପୁରା ଟିକେଟ୍ ଓ ଆଉ ଖଣ୍ଡେ ଅଧା । ଅଜା ନାତି ବସ୍ ଭିତରେ ବସିଲେ । କାଳିଆ ବାବୁଙ୍କ ସାମାନ୍ ପତ୍ର ଯଥାସ୍ଥାନେ ରଖି ଦେଇ ଝାଡ଼ ଝୁଡ଼ ହେଲା । କହିଲା —"ବାବୁ ! ଯାଉଛି, ଝୁଆର" ।

—"ହଉ ଯା, ମନେ ପକାଉ ଥିବୁ" ।

—"ହଁ ବାବୁ, ଚଞ୍ଚଳ ଫେରିବେ" ।

—"ହଁ, ହଁ" । ବୁଢ଼ାବାବୁ ଭଲ ଭାବରେ ନିଜ ଆସନରେ ବସିଲେ ।

ବସ୍ ଷ୍ଟେଡ କରି ତାହାର ଗନ୍ତବ୍ୟ ପଥରେ ଯିବାକୁ ଆରମ୍ଭ କଲା । ଆଗରେ ଛକ ପଡ଼ିବ । ହଠାତ ସାଇକେଲରେ ଆସି ଥାନାବାବୁ ଛକ ଜାଗାରେ ପହଞ୍ଚିଲେ । ବସ୍ ଛକରେ ଅଟକି ଗଲା । ଥାନାବାବୁ ବୁଢ଼ାବାବୁଙ୍କୁ ଓହ୍ଲାଇବାକୁ କହିଲେ । ଝିଅ ଓ ନାତି ଦୁହେଁ ଓହ୍ଲାଇଲେ । ତାଙ୍କର ସାମାନ୍ ସବୁକୁ ଓହ୍ଲାଇବା ପାଇଁ ଆଦେଶ ଦେଲେ । କ୍ଲିନର ଓ ବୁଢାବାବୁ ଦୁହେଁ ସାମାନ୍ ସବୁକୁ ଓହ୍ଲାଇ ଆଣିଲେ । ଥାନାବାବୁ ବସ୍ ଭିତରକୁ ଭଲ ଭାବରେ ଦେଖିଲେ, ଯାଞ୍ଚ କରିନେଲେ । ଗଣିଲେ ମୋଟେଟି ଯାତ୍ରୀ । ଯାତ୍ରୀମାନେ କଣହେଲା ? କଣହେଲା ? କହୁଥାନ୍ତି । ଦୁଇଜଣ କନ୍‌ଷ୍ଟେବଲ ପହଞ୍ଚିଲେ । ଥାନାବାବୁ ଜଣକୁ କହିଲେ —"ଏ ଛୋଟ ପୁଅକୁ ତା ମା ପାଖରେ ପହଞ୍ଚେଇ ଦିଅ ।" ଥାନାବାବୁ ବସ୍ତାକୁ ଲକ୍ଷ୍ୟ କରି ପଚାରିଲେ—"ଏ ବସ୍ତା କାହାର ?" ବୁଢାବାବୁ କହିଲେ —"ଆଜ୍ଞା ମୋର, କଣ ହେଲା ? "କାହିଁକି ?" ଥାନାବାବୁ ବସ୍ତା ଖୋଲିବା ପାଇଁ ଆଦେଶ ଦେଲେ । ତା ଭିତରୁ ବାହାରିଲା ପନ ପରିବା ଓ ପୋଟଳାଟିଏ । ଯାତ୍ରୀମାନେ ଚାହିଁଥାନ୍ତି । ବୁଢାବାବୁ ଆଁ କରିଥାନ୍ତି । ଏଥର ତାଙ୍କ ନଶ ଆଦୌ ହଲୁ ନ ଥାଏ । କପାଳରୁ ଝାଳ ବାହାରି ନଶକୁ ଭିଜାଇ ଦେଉଥାଏ । ପୋଟଳା ଫିଟାଗଲା । ତା ଭିତରେ ଅଛି ପନ୍ଦର ଭରି ସୁନା ଗହଣା । ଥାନାବାବୁ କନଷ୍ଟେବଲକୁ ଆଦେଶ ଦେଲେ--"ବୁଢାବାବୁକୁ ଗିରଫ କର । ସୁନାତକ ପୋଟଳା

ସନ୍ଧିତ ଧରିଲେ। ବର୍ତ୍ତମାନ ଯାତ୍ରୀମାନେ ଅନୁମାନ୍ କଲେ ସମସ୍ତ ବିଷୟ ବୁଝିନେଲେ। ବସ୍ ଭିତରେ ହୋ ହା ଶବ୍ଦ ଶୁଣାଗଲା। ସମସ୍ତେ କହୁଥାନ୍ତି—"ଆରେ ବାପ୍‌ରେ ଚୋରଟାଏ"।

ଅନୁମତି ପାଇ ବସ୍ ଯାତ୍ରୀମାନଙ୍କୁ ଧରି ଚାଲିଗଲା। ବୁଢ଼ାବାବୁ ହାତ ଯୋଡ଼ି କହିଲେ—"ଆଜ୍ଞାବାବୁ, ଏ ସବୁ ମୋର··· ନଜର। ମୁଁ ଚୋରି କରି ନାହିଁ।"

—"ଚୁପ୍‌କର ବେଶୀ ବକ୍ ବକ୍ କର ନାହିଁ। ଚାଲ୍ ଥାନାକୁ ଚାଲ୍"।

ବୁଢ଼ାବାବୁଙ୍କ ପାଟିବନ୍ଦ। ଛକ ଜାଗାରୁ ପ୍ରବାଭିମୁଖରେ ଥାନା ଆଡ଼କୁ ଚାଲିଲେ। ଦେଖି ଦେଖି ଦଶବାର ଲୋକ ମଧ୍ୟ ଜମା ହୋଇ ସେ ସଙ୍ଗେ ଚାଲିବାକୁ ଆରମ୍ଭ କରି ଦେଲେଣି। ସେମାନଙ୍କ ଇଚ୍ଛା ବୁଢ଼ାବାବୁଙ୍କ ଏ କାହାଣୀ ଶୁଣିବେ। ବୁଢ଼ାବାବୁ ମଝିରେ ମଝିରେ କହୁଥାନ୍ତି—"ବୃଥା ମୋ ଗାଁ ଛାଡ଼ି ଆସିଲି। ମୁଁ ନିର୍ଦ୍ଦୋଷ।

—ଃ ସମାପ୍ତ ଃ—

ଅଖିଳ ପ୍ରେସ୍, ଭବାନୀପାଟଣା

# ପଦେ କଥା

ପୁସ୍ତକଟି ଚଦୋଟି ଗଳ୍ପର ସମଷ୍ଟି ।

ପାଠକ ପାଠିକା ପଢ଼ିବେ—

"ଧନ ଦୌଲତରେ ଉନ୍ମତ୍ତ ରୂପମଣି ତୀର୍ଥଯାତ୍ରାରେ ତଥା-କଥିତ ଧର୍ମ ଅର୍ଜ୍ଜନ କରି ଯୌନ ପ୍ରବୃତ୍ତିର କଠୋର ପ୍ରତିହିଂସାରେ ସୃଷ୍ଟିକରେ କନ୍ଦଳ; ଶେଷରେ ଖଳ ଦୁଃଶାସନର ଅବସ୍ଥା ହୁଏ ଡାକ୍ତରର ଖାତାରେ Hopeless" ।

"ହୋଲି ପର୍ବରେ ଯୁବ ସୁଲଭ ପ୍ରବୃତ୍ତିର ଆକର୍ଷଣରେ କୁମୁଦର ମୁଖରେ ଭାଷା ଫୁଟି ଉଠେ—ଏହା ହେଲା ମୋ ଗ୍ରନ୍ଥର ଦରଦ······ ମୋ କପାଳର ଏ ଦାଗ ପାଇଁ ଏକ ଅଶୁଦ୍ଧ କ୍ଷଣ······ ଅବାଟର କଣ୍ଟା" ।

"ଶଠତା, ଚୌର୍ଯ୍ୟବୃତ୍ତି ଓ ଛଳନାର ରୂପ ବୁଢ଼ାବାବୁ ଛକଲୁ ଡେଇଁ ନିଜ ଘରକୁ ଯାଇ ପାରେ ନାହିଁ। ବସ୍ ଅଟକିଯାଏ ଛକରେ। ଥାନାବାବୁ ବରମତ କରନ୍ତି ସ୍ୱୈର ସୁନା" ।

ଶ୍ରୀ ରାସବିହାରୀ ଓଂବଠହରା
ସମ୍ପାଦକ "ସାଗର"
ଭବାନୀପାଟଣା